# ହିତ-କଥା

( ପ୍ରଥମ ଓ ଦ୍ୱିତୀୟ ଭାଗ ଏକତ୍ର )

୰ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ. ଙ୍କ
କର୍ତ୍ତୃକ ସଙ୍କଳିତ

ପ୍ରକାଶକ :

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର

ବିନୋଦବିହାରୀ, କଟକ — ୨

Ppaer used for the printing of this Book was
made available by the Govt. of Orissa
at Concessional rates.

---

* ହିତ-କଥା

( ପ୍ରଥମ ଓ ଦ୍ୱିତୀୟ ଭାଗ ଏକତ୍ର )

* ସଙ୍କଳକ :

୰ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ.

* ପ୍ରକାଶକ :

ନବ ଷ୍ଟୁଡେଣ୍ଟସ୍ ଷ୍ଟୋର

ବିନୋଦବିହାରୀ, କଟକ - ୭୫୩ ୦୦୨

୧୯୭୮

* ମୂଲ୍ୟ : ଛଅ ଙ୍କା ପଚିଶ ପଇସା ମାତ୍ର

# ସୂଚୀ

## ପ୍ରଥମ ଭାଗ ( ମିତ୍ରଲାଭ )



## ଦ୍ୱିତୀୟ ଭାଗ ( ସୁହୃଦ୍ଭେଦ )

| ବିଷୟ | ପୃଷ୍ଠା |
| --- | --- |

# ହିତ-କଥା

## ପ୍ରଥମ ଭାଗ

### —ମିତ୍ର ଲାଭ—

ମଙ୍ଗଳାଚରଣ :—ଯେଉଁ ଦେବାଧିଦେବଙ୍କ ଶିରୋଦେଶରେ ଜାହ୍ନବୀଙ୍କ ଶୁକ୍ଳବର୍ଣ୍ଣ ଫେନରେଖା ତୁଲ୍ୟ ଶଶିକଳା ସତତ ବିରାଜମାନ, ସେହି ଭଗବାନ୍ ଭୂତପତିଙ୍କ ପ୍ରସାଦରେ ସାଧୁଗଣ ସ୍ୱ ସ୍ୱ ଆରବ୍ଧ କାର୍ଯ୍ୟରେ ସିଦ୍ଧିଲାଭ କରନ୍ତୁ !!!

### ସୂଚନା

ଆମ୍ଭର ଏହି ଭାରତବର୍ଷର ଉତ୍ତର ପ୍ରଦେଶରେ ଭାଗୀରଥୀ ନାମରେ ଏକ ପବିତ୍ର ନଦୀ ବହିଯାଏ । ଏହି ନଦୀ ତୀରରେ ପାଟଳୀପୁତ୍ର ନାମରେ ଗୋଟିଏ ସୁନ୍ଦର ନଗର ଅଛି । ନଗରଟି ପୂର୍ବକାଳରେ ଅତ୍ୟନ୍ତ ସମ୍ପତ୍ତିଶାଳୀ ଥିଲା । ଏହି ନଗରରେ ସୁଦର୍ଶନ ନାମକ ଜଣେ ଉତ୍ତମ ରାଜା ଥିଲେ । ସେ ସକଳପ୍ରକାର ରାଜଗୁଣରେ ଅଳଂକୃତ ହୋଇଥିଲେ । ଦୟା ଓ ନ୍ୟାୟ ନିମିତ୍ତ

---

ତାହାଙ୍କ ରାଜତ୍ୱ ପ୍ରସିଦ୍ଧ ଥିଲା । କିନ୍ତୁ ପୁତ୍ରମାନଙ୍କ ମନ୍ଦ ଆଚରଣରେ ରାଜା ସର୍ବଦା ଚିନ୍ତିତ ଥିଲେ । ସେମାନଙ୍କର ଶାସ୍ତ୍ରଜ୍ଞାନ ନ ଥିଲା ।

ଏକଦା ରାଜା ମହାଶ୍ରେଷ୍ଠ ତାହାଙ୍କ ଉଦ୍ୟାନରେ ବୁଲୁଥିଲେ, ଏପରି ସମୟରେ ସେ କୌଣସି ଜଣେ ପଣ୍ଡିତ ଦୁଇଗୋଟି ଶ୍ଲୋକ ପାଠ କରିବାର ଶୁଣିଲେ । ଶ୍ଲୋକ ଦୁଇଟିର ଭାବ ଏହି—ଶାସ୍ତ୍ର ବହୁବିଧ ସଂଶୟ ଦୂର କରେ, ଜଣା ନଥିବା ବିଷୟରେ ଜ୍ଞାନ ଜନ୍ମାଇ ଦିଏ, ପୁଣି ଗୁପ୍ତବିଷୟ ନିର୍ମଳରୂପେ ଦେଖାଇ ଦିଏ । ଶାସ୍ତ୍ର ସମସ୍ତଙ୍କ ଚକ୍ଷୁ ତୁଲ୍ୟ; ତାହା ଯେ ଜାଣେ ନାହିଁ, ସେ ଅନ୍ଧ । ଯୌବନ, ଐଶ୍ୱର୍ଯ୍ୟ, ଉଚ୍ଚପଦ ଏବଂ ଅବିଚାର ଏ ଚାରିଗୋଟି ମଧ୍ୟରୁ କୌଣସି ଗୋଟିଏ ଥିଲେ ମଧ୍ୟ ମନୁଷ୍ୟର ବହୁ ଅନର୍ଥ ଘଟିଥାଏ; ଏହିସବୁ ମିଶିଲେ ଯେ ଭୟଙ୍କର ଅନିଷ୍ଟ ଘଟିବ, ତହିଁରେ ସନ୍ଦେହ ନାହିଁ । ଏହି ଚାରିଗୋଟି ବିଷୟ ଜ୍ଞାନର ପରମ ଶତ୍ରୁ ।

ଏହା ଶୁଣି ରାଜାଙ୍କ ଦୁଃଖର ଆଉ ସୀମା ରହିଲା ନାହିଁ, କାରଣ ତାହାଙ୍କ ପୁତ୍ରମାନେ ସର୍ବଦା ଆଳସ୍ୟ ଓ ଆମୋଦରେ କାଳ କଟାଉଥାନ୍ତି । ସେ ସ୍ୱୀୟ କୁପଥଗାମୀ ପୁତ୍ରମାନଙ୍କ କଥା ମନେ ପକାଇ ଉଦ୍‌ବିଗ୍ନଚିତ୍ତରେ ଚିନ୍ତା କରିବାକୁ ଲାଗିଲେ—ଯେଉଁ ପୁତ୍ର ଧାର୍ମିକ ଓ ବିଦ୍ୱାନ୍ ନୁହେ, ସେପରି ପୁତ୍ର ଜନ୍ମିଲେ କି ଲାଭ ? ମୂର୍ଖପୁତ୍ର ପ୍ରାପ୍ତିରେ କ୍ଷତି ଛଡ଼ା ଲାଭ ନାହିଁ । ବିକଳ ନେତ୍ରରେ ଫଳ ଅବା କିଣ ? ତାହା କେବଳ ସର୍ବଦା ପୀଡ଼ାର କାରଣ ହୋଇଥାଏ ମାତ୍ର । ପୁତ୍ର ନ ଜନ୍ମିବା, ଜନ୍ମ ପାଇ ମରିଯିବା ଓ ମୂର୍ଖପୁତ୍ର—ଏହି ତିନିକଥା ମଧ୍ୟରୁ ପ୍ରଥମ ଦୁଇଟି ବରଂ ଭଲ, ଶେଷଟି ଆଦୌ ଭଲ ନୁହେ । ସନ୍ତାନ ଜାତ ନ ହେଲେ ବା ଜାତ ହୋଇ ମରିଗଲେ

---

ଯେ କରେ ଅନିତ୍ୟ ଦେହ ପର ହିତେ ଦାନ,

ଥରେମାତ୍ର ଦୁଃଖ ଭୋଗ କରିବାକୁ ହୁଏ; କିନ୍ତୁ ପୁଣି ମୂର୍ଖ ହେଲେ ଚିରକାଳ ଅଶେଷ ଯନ୍ତ୍ରଣା ଭୋଗ କରିବାକୁ ହୋଇଥାଏ । ଯେ ଜନ୍ମଗ୍ରହଣ କଲେ ବଂଶର ଉନ୍ନତି ହୁଏ, ତାହାର ଜନ୍ମ ହିଁ ଯଥାର୍ଥ ଜନ୍ମ । ନଚେତ୍ ଏହି ପରିବର୍ତ୍ତନଶୀଳ ସଂସାରରେ କିଏ ନ ଜନ୍ମେ, କିଏ ବା ନ ମରେ ? ଅର୍ଥାତ୍ ଯେଉଁ ପୁତ୍ର ଜନ୍ମିଲେ ବଂଶର ମଙ୍ଗଳ ସାଧିତ ହୁଏ, ତାହାର ଜନ୍ମ ହିଁ ସାର୍ଥକ । ଗୁଣବାନ୍ ଲୋକମାନଙ୍କ ଗଣନା ବା ଉଲ୍ଲେଖ ହେଉଥିବା ସମୟରେ ଯାହା ନାମରେ ଖଡ଼ିଗାର ସସମ୍ଭ୍ରମରେ ନ ପଡ଼େ, ତାହାକୁ ଗର୍ଭରେ ଧରି ଯଦି ମାତା ପୁତ୍ରବତୀ ହୁଏ, ତାହାହେଲେ ବନ୍ଧ୍ୟା କାହାକୁ କହିବା ? ଦାନରେ, ତପସ୍ୟାରେ, ଶୌର୍ଯ୍ୟରେ ଏବଂ ବିଦ୍ୟା ଓ ଅର୍ଥଲାଭରେ ଯାହାର ମନ ଉତ୍ସୁକ ନ ହୁଏ, ସେ ତାହାର ମାତାର ମଳମୂତ୍ର ସ୍ୱରୂପ । ଗୋଟିଏ ଗୁଣବାନ୍ ପୁତ୍ର ବରଂ ଭଲ; କିନ୍ତୁ ଶତ ମୂର୍ଖପୁତ୍ର କିଛି ନୁହନ୍ତି । ଏକମାତ୍ର ଚନ୍ଦ୍ର ଜଗତର ଅନ୍ଧକାର ଦୂର କରେ; କିନ୍ତୁ ଲକ୍ଷ ଲକ୍ଷ ନକ୍ଷତ୍ର ଥାଇ ମଧ୍ୟ ଲେଶମାତ୍ର ଅନ୍ଧକାର ନାଶ କରି ପାରନ୍ତି ନାହିଁ । ଯେକୌଣସି ହେଲେ ପୁଣ୍ୟ ତୀର୍ଥରେ ଦୁଷ୍କର ତପ ସାଧନ କରିଅଛନ୍ତି, ତାହାଙ୍କ ପୁତ୍ର ବଶମ୍ବଦ, ସମୃଦ୍ଧିଶାଳୀ, ଧାର୍ମିକ ଓ ସୁବୋଧ ହୁଏ । ନିତ୍ୟଅର୍ଥାଗମ, ଅରୋଗିତା, ପ୍ରିୟା ଓ ପ୍ରିୟମ୍ବଦା ଭାର୍ଯ୍ୟା, ଆଜ୍ଞାନୁବର୍ତ୍ତୀ ସନ୍ତାନ ପୁଣି ଅର୍ଥକରୀ ବିଦ୍ୟା—ଏହି ଛଅଟି ବିଷୟ ସଂସାରରେ ସୁଖର ନିଦାନ । କେହି ହେଲେ ଭୂଷ-ପୂର୍ଣ୍ଣ ପାତ୍ର ପରି ବହୁ ପୁତ୍ର ଦ୍ୱାରା ପ୍ରଶଂସଭାଜନ ହୁଏ ନାହିଁ; କିନ୍ତୁ କୁଳପ୍ରଦୀପ ସ୍ୱରୂପ ଏକମାତ୍ର ପୁତ୍ରଦ୍ୱାରା ମଧ୍ୟ ପିତା ଧନ୍ୟ ହୋଇଥାଏ । ମୂର୍ଖ ପୁତ୍ର ବିଷ ତୁଲ୍ୟ ଅନିଷ୍ଟକର । ପଣ୍ଡିତ ପୁତ୍ର ପିତାର ଗୌରବ ବଢ଼ାଏ । ଯେଉଁ ବ୍ୟକ୍ତିର ପୁତ୍ର ବୁଦ୍ଧିମାନ,

ତାହା ପ୍ରତି ସମସ୍ତେ ଭକ୍ତି ଓ ସମ୍ମାନ ଦେଖାଇଥାନ୍ତି । ଧନୁ ସହିତ ଗୁଣର ଯେଉଁ ସମ୍ବନ୍ଧ, ପିତା ସହିତ ପୁତ୍ରର ସେହି ସମ୍ବନ୍ଧ । ଧନୁର ଦଣ୍ଡ ଦୃଢ଼ ଥିଲେ ସୁଦ୍ଧା ତାହାର ଗୁଣ ଦୁର୍ବଳ ହେଲେ, ସେହି ଧନୁର ବଳ ଆସିବ କେଉଁଠାରୁ ?

"ଧର୍ମ, ଅର୍ଥ, କାମ ଓ ମୋକ୍ଷ—ଏଗୁଡ଼ିକ ମଧ୍ୟରୁ ଯାହାର ଗୋଟିଏ ହେଲେ ନାହିଁ, ତାହାର ଜନ୍ମ ଛାଗୀର ଗଳସ୍ତନପରି ବୃଥା । ପ୍ରାଣୀ ଯେତେବେଳେ ମାତୃଗର୍ଭରେ ଥାଏ, ସେତେବେଳେ ବିଧାତା ତାହାର ଆୟୁଃ, କର୍ମ, ଧନ, ବିଦ୍ୟା ଓ ମରଣ ଏହି ପାଞ୍ଚଗୋଟି ବିଷୟର ସୃଷ୍ଟି କରେ । ଯେଉଁ ଘଟନାସକଳ ନିଶ୍ଚୟ ହେବ, ତାହା ମହାତ୍ମାମାନଙ୍କର ସୁଦ୍ଧା ଘଟିଥାଏ; ସେହି କାରଣରୁ ନୀଳକଣ୍ଠ ମହାଦେବ ଉଲଙ୍ଗ ଏବଂ ହରି ମହାସର୍ପରେ ଶାୟିତ ହୋଇଅଛନ୍ତି । ଯାହା ହେବାର ନୁହେ ତାହା କଦାପି ହେବ ନାହିଁ; ପୁଣି ଯାହା ହେବାକୁ ଥିବ ତାହା ନିଶ୍ଚୟ ଘଟିବ—କୌଣସି ଉପାୟରେ ହେଲେ ତାହାର ଅନ୍ୟଥା ହୋଇ ନ ପାରେ । ଲୋକେ ଏହା ଜାଣି କି ହେତୁ ନିଶ୍ଚିନ୍ତ ହୋଇ ରହନ୍ତି ନାହିଁ ? କାର୍ଯ୍ୟ କରି ନ ପାରିବା ଲୋକେ ଆଳସ୍ୟ ଯୋଗୁଁ ଏହିପରି କହିଥାନ୍ତି ।

ଯେପରି କେବଳ ଗୋଟିଏ ଚକ୍ରରେ ରଥ ଚଳି ନ ପାରେ, ସେହିପରି ଉଦ୍ୟମ ଓ ଅଧ୍ୟବସାୟର ସହାୟତା ବ୍ୟତୀତ ଦୈବ (ଭାଗ୍ୟ) କେବେହେଲେ ଫଳପ୍ରଦ ହୁଏ ନାହିଁ । ଦୈବ କେବଳ ପୂର୍ବଜନ୍ମକୃତ କର୍ମର ଫଳ ମାତ୍ର ବୋଲି କଥିତ । ଅତଏବ ଆଳସ୍ୟ ଛାଡ଼ି ଅଧ୍ୟବସାୟ ସହିତ କାର୍ଯ୍ୟ କରିବା ନିମିତ୍ତ ଚେଷ୍ଟିତ ହେବା କର୍ତ୍ତବ୍ୟ । ଉଦ୍ୟମଶାଳୀ ଲୋକମାନେହିଁ ଐଶ୍ୱର୍ଯ୍ୟ ଲାଭ

---

ସତତ ଉଦ୍ୟମଶୀଳ ପୁରୁଷର ଘରେ,

କରିଥାନ୍ତି । 'ଅଦୃଷ୍ଟ ସବୁ ଦିଏ, ବୃଥା ଶ୍ରମ କରିବା ଅନାବଶ୍ୟକ'— ଏହା ଅଳସୁଆ କାପୁରୁଷମାନେ କହିଥାନ୍ତି । ସମସ୍ତେ ଦୈବାଧୀନ— ଏହି ସଂସ୍କାର ଭୁଲିଯାଇ ସାଧ୍ୟାନୁରୂପ ଅଧ୍ୟବସାୟ ସହକାରେ କାର୍ଯ୍ୟ ସାଧନରେ ଯତ୍ନବାନ ହେବା ବିଧେୟ । ଯତ୍ନ କଲେ ଯଦି କାର୍ଯ୍ୟ ସିଦ୍ଧ ନ ହୁଏ, ତାହାହେଲେ ତହିଁରେ ଦୋଷର ବିଷୟ କିଛି ନାହିଁ । ଯେପରି କୁମ୍ଭାର ମୃତ୍ତିକାରୁ ଇଚ୍ଛାନୁସାରେ ହାଣ୍ଡି, କଳସି ଇତ୍ୟାଦି ପଦାର୍ଥ ପ୍ରସ୍ତୁତ କରେ, ସେପରି ମନୁଷ୍ୟ ମଧ୍ୟ ଆତ୍ମକୃତ କର୍ମସକଳ ସ୍ୱେଚ୍ଛାମତ ସମ୍ପନ୍ନ କରିବାକୁ ସମର୍ଥ ହୁଏ, କାକତାଳୀୟ ଘଟନା ତୁଲ୍ୟ ଯଦିଚ ଧନ ସମ୍ମୁଖରେ ଉପସ୍ଥିତ ହୁଏ, ତଥାପି ଭାଗ୍ୟ ସ୍ୱୟଂ ତାହା ଗ୍ରହଣ କରିପାରେ ନାହିଁ । ତାହା ଗ୍ରହଣ କରିବାକୁ ହେଲେ ପୁରୁଷକାର ଆବଶ୍ୟକ । କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରିବା ମାତ୍ରେ ତାହା ସମ୍ପନ୍ନ ହୁଏ ନାହିଁ, ଯତ୍ନ କଲେ ତାହା ସିଦ୍ଧ ହୁଏ । ମୃଗ କେବେହେଲେ ସ୍ୱୟଂ ଆସି ନିଦ୍ରିତ ସିଂହ ମୁଖରେ ପ୍ରବେଶ କରେ ନାହିଁ । ଯେଉଁ ପିତାମାତା ନିଜ ସନ୍ତାନମାନଙ୍କୁ ପଢ଼ାନ୍ତି ନାହିଁ, ସେମାନେ ସନ୍ତାନମାନଙ୍କ ଶତ୍ରୁ ବୋଲି ଗଣ୍ୟ ହୁଅନ୍ତି; କାରଣ ହଂସଗଣ ମଧ୍ୟରେ ଯେପରି ବକ ଶୋଭାପାଏ ନାହିଁ, ତଦ୍ରୂପ ସେମାନଙ୍କ ଅଶିକ୍ଷିତ ସନ୍ତାନଗଣ ପଣ୍ଡିତସଭା ମଧ୍ୟରେ ଶୋଭା ପାଆନ୍ତି ନାହିଁ । ରୂପବାନ୍, ଯୁବକ ଏବଂ ଉଚ୍ଚବଂଶଜାତ ହେଲେହେଁ କୌଣସି ବ୍ୟକ୍ତିଠାରେ ଯଦି ବିଦ୍ୟା ନ ଥାଏ, ତାହାହେଲେ ସେ ନିର୍ଗନ୍ଧ ପଳାଶପୁଷ୍ପ ପରି ଶୋଭା ପାଏ ନାହିଁ ।"

ରାଜା ଏହିପରି ଚିନ୍ତାକରି ସ୍ୱପ୍ରାସାଦକୁ ପ୍ରତ୍ୟାବୃତ୍ତ ହେଲେ ଏବଂ ରାଜ୍ୟର ପଣ୍ଡିତମାନଙ୍କୁ ଡକାଇ ଏକ ସଭା କଲେ । ରାଜା

---

ସକଳ ସମ୍ପଦ ଆସି ସଦା ବାସ କରେ ।

କହିଲେ, "ପଣ୍ଡିତଗଣ, ଆପଣମାନେ ମୋ କଥା ଶ୍ରବଣ କରନ୍ତୁ । ମୋ ପୁତ୍ରମାନେ ଶାସ୍ତ୍ରଜ୍ଞାନଶୂନ୍ୟ ଓ ସତତ କୁପଥଗାମୀ । ଏଠାରେ ଏପରି କି କୌଣସି ପଣ୍ଡିତ ଅଛନ୍ତି ଯେ, ସେମାନଙ୍କୁ ନୀତିଶାସ୍ତ୍ରୋକ୍ତ ଉପଦେଶ ଦେଇ ଜ୍ଞାନୀ କରି ପାରିବେ ? ମୁଁ ଅନୁରୋଧ କରେ ଯେ ଆପଣମାନଙ୍କ ମଧ୍ୟରୁ କେହି ଜଣେ ଅନୁଗ୍ରହପୂର୍ବକ ମୋ ପୁତ୍ରମାନଙ୍କ ମୂର୍ଖତା ଦୂର କରି ସେମାନଙ୍କୁ ପୁନର୍ଜନ୍ମ ଦାନ କରନ୍ତୁ । ଯେପରି କାଚ ସୁବର୍ଣ୍ଣ ସଂସର୍ଗରେ ମରକତମଣିର ବର୍ଣ୍ଣ ଧାରଣ କରେ, ସେହିପରି ମୂର୍ଖବ୍ୟକ୍ତି ମଧ୍ୟ ପଣ୍ଡିତମାନଙ୍କ ସଂସର୍ଗରେ ଵିଜ୍ଞତା ପ୍ରାପ୍ତ ହୋଇଥାଏ । କଥିତ ଅଛି, ମନ୍ଦ ନୀଚବ୍ୟକ୍ତିର ସହବାସରେ ନୀଚତା ପ୍ରାପ୍ତ ହୁଏ, ସମାନ ବ୍ୟକ୍ତିର ସଂସର୍ଗରେ ସମାନ ରହେ, ପୁଣି ଅପେକ୍ଷାକୃତ ଗୁଣବାନ୍ ଲୋକର ସଂସର୍ଗ ଯୋଗୁଁ ଅପେକ୍ଷାକୃତ ଉନ୍ନତ ହୁଏ ।

ସଭା ମଧ୍ୟରେ 'ବିଷ୍ଣୁଶର୍ମା' ନାମକ ଜଣେ ପ୍ରଧାନ ପଣ୍ଡିତ ଥିଲେ । ସକଳ ନୀତିଶାସ୍ତ୍ରରେ ତାହାଙ୍କର ଗଭୀର ଜ୍ଞାନ ଥିଲା—ସେ ସାକ୍ଷାତ୍ ବୃହସ୍ପତି ତୁଲ୍ୟ ଜ୍ଞାନୀ ଥିଲେ । ରାଜାଙ୍କ କଥା ଶୁଣି, ସେ ଉଠି କହିଲେ, 'ଦେବ ! ଏହି ରାଜପୁତ୍ରଗଣ ଅତି ଉଚ୍ଚବଂଶରେ ଜାତ ହୋଇଅଛନ୍ତି, ସେଥିଯୋଗୁଁ ମୁଁ ସେମାନଙ୍କୁ ନୀତିଶାସ୍ତ୍ର ଶିକ୍ଷା ଦେବାକୁ ପ୍ରସ୍ତୁତ ଅଛି । କାରଣ କୌଣସି ପ୍ରକାର ଶିକ୍ଷା ଅପାତ୍ରରେ ନିହିତ ହେଲେ କେବେହେଲେ ଫଳବତୀ ହୁଏ ନାହିଁ । ଦେଖନ୍ତୁ—ଶତ ଶତ ଚେଷ୍ଟାରେ ମଧ୍ୟ ବକକୁ କଦାପି ଶୁକ ପକ୍ଷୀ ତୁଲ୍ୟ ପଢ଼ାଇ ହୁଏ ନାହିଁ । ପୁନର୍ବାର ଦେଖନ୍ତୁ—ଏହି ବଂଶରେ କେବେହେଲେ ନିର୍ଗୁଣ ସନ୍ତାନ ଜନ୍ମଗ୍ରହଣ କରି ନ ପାରନ୍ତି । ପଦ୍ମରାଗମଣି-ଖଣିରୁ କେବେହେଲେ କାଚ ବାହାରେ କି ?

---

ଦୁର୍ଜନ ଯଦ୍ୟପି କହେ ସୁମିଷ୍ଟ ବଚନ,

ଅତଏବ, ମହାରାଜ, ମୁଁ ଛମାସ ମଧ୍ୟରେ ଆପଣଙ୍କ ପୁତ୍ରମାନଙ୍କୁ ନୀତିଶାସ୍ତ୍ରରେ ପାରଦର୍ଶୀ କରି ପାରିବ ।’

ରାଜା ପୁନରାୟ ବିନୀତ ଭାବରେ କହିଲେ—(ଅତିସ୍ତୁଦ୍ର) କୀଟ ସୁଦ୍ଧା ପୁଷ୍ପ ସଙ୍ଗରେ ରହି ସାଧୁମାନଙ୍କ ମସ୍ତକରେ ଆରୋହଣ କରେ ଏବଂ ମହାପୁରୁଷମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହେଲେ (ଅତି-ସାମାନ୍ୟ) ପ୍ରସ୍ତର ସୁଦ୍ଧା ଦେବତ୍ୱ ଲାଭ କରିଥାଏ । ଅତଏବ ଆପଣ ମୋ ପୁତ୍ରମାନଙ୍କୁ ନୀତିଶାସ୍ତ୍ର ଶିଖାଦେଇ ପାରିବେ । ଏହା କହି ରାଜା ବିଷ୍ଣୁଶର୍ମାଙ୍କ ପ୍ରତି ସମୁଚିତ ସମ୍ମାନ ଦେଖାଇ ପୁତ୍ରମାନଙ୍କୁ ତାହାଙ୍କ ହସ୍ତରେ ସମର୍ପଣ କଲେ ।

ଅନନ୍ତର ବିଷ୍ଣୁଶର୍ମା ପ୍ରାସାଦ ଉପରେ ରାଜକୁମାରମାନଙ୍କ ସମକ୍ଷରେ ପ୍ରସଙ୍ଗକ୍ରମେ କହିଲେ—କାବ୍ୟଶାସ୍ତ୍ର ଆଳାପ ସୁଖରେ ବୁଦ୍ଧିମାନ୍ ଲୋକମାନଙ୍କର କାଳକ୍ଷେପ ହୁଏ, ପୁଣି ମୂର୍ଖମାନଙ୍କର ସମୟ ନିଦ୍ରା, ଦୁଷ୍କ୍ରିୟା (ସୁରାପାନାଦି) ଓ କଳହାଦିରେ ଅତିବାହିତ ହୋଇଥାଏ । ଅତଏବ ତୁମ୍ଭମାନଙ୍କ ମନୋରଞ୍ଜନ ନିମିତ୍ତ କାକ, କୂର୍ମ ପ୍ରଭୃତିଙ୍କ ସୁନ୍ଦର ଓ ବିଚିତ୍ର ଗଳ୍ପ କହିବି, ଶ୍ରବଣ କର । ରାଜକୁମାରମାନେ କହିଲେ—କହିବା ହେଉନ୍ତୁ ।

ବିଷ୍ଣୁଶର୍ମା ଉତ୍ତର କଲେ—“ଶୁଣ, ବର୍ତ୍ତମାନ ମୁଁ ‘ମିତ୍ରଲାଭ’ କହିବାକୁ ଆରମ୍ଭ କରୁଅଛି । ବୁଦ୍ଧିମାନ୍ ବନ୍ଧୁମାନେ ଧନହୀନ ଓ ନିରୁପାୟ ହେଲେ ସୁଦ୍ଧା ମିତ୍ରଭାବାପନ୍ନ ହୋଇ କାକ କୂର୍ମାଦିଙ୍କ ପରି କାର୍ଯ୍ୟ ସାଧନ କରିଥାନ୍ତି ।” ରାଜପୁତ୍ରମାନେ କହିଲେ—ତାହା କିପରି କହନ୍ତୁ ।

———

ତାର ସେ କଥାରେ ନ ଭୁଲିବ କଦାଚନ ।

## — ମିତ୍ର ଲାଭ —

### କଥାରମ୍ଭ

ରାଜପୁତ୍ରମାନଙ୍କ ଅନୁରୋଧରେ ବିଷ୍ଣୁଶର୍ମା କହିଲେ —ଭାରତବର୍ଷର ଦକ୍ଷିଣ ପ୍ରଦେଶରେ ଗୋଦାବରୀ ନାମରେ ଏକ ନଦୀ ପ୍ରବାହିତ । ସେ ନଦୀତୀରରେ ଗୋଟିଏ ବଡ଼ ଶିମିଳି ଗଛ ଅଛି । ସେଠାକୁ ସକଳ ଦିଗରୁ ପକ୍ଷିଗଣ ଆସି ରାତି ସମୟରେ ବାସ କରନ୍ତି । ସେହି ବୃକ୍ଷରେ ଲଘୁପତନକ ନାମକ ଏକ କାକ ବାସ କରେ । ଏକଦା ରାତି ଶେଷ ହୋଇ ଆସୁଅଛି ଏବଂ ଉଜ୍ଜ୍ୱଳ ଚନ୍ଦ୍ର ପଶ୍ଚିମ ପର୍ବତରେ ଅସ୍ତ ହେବାକୁ ଯାଉଅଛନ୍ତି, ଏପରି ସମୟରେ ଲଘୁପତନକ ଚକ୍ଷୁ ଫିଟାଇ ଦେଖିଲା ଯେ, ଜଣେ ବ୍ୟାଧ ବୃକ୍ଷ ନିକଟକୁ ଆସୁଅଛି । ବ୍ୟାଧଟି ଦ୍ୱିତୀୟ ଯମ ପରି ଦେଖା ଯାଉଥିଲା । ତାହାକୁ ଦେଖି କାକ ଭୀତ ଓ ବିସ୍ମିତ ହେଲା । ଏହି ଦୃଶ୍ୟ ଦେଖି କାକ ଚିନ୍ତାକଲା, 'ଆଜି ପ୍ରାତଃକାଳରେ ଅମଙ୍ଗଳ ଦର୍ଶନ ହେଲା; ଜାଣେ ନାହିଁ ଆଜି କି ଅଶୁଭ ଘଟିବ ।' ଏହା ଭାବି ସେ ବାଣୁଆ କଣ କରିବ ତାହା ଦେଖିବା ନିମିତ୍ତ ପୁଣି ସେ କି ଅନିଷ୍ଟ କରିବାକୁ ଇଚ୍ଛା କରିଅଛି ତାହା ନିର୍ଣ୍ଣୟ କରିବା ସକାଶେ ବ୍ୟାକୁଳ ଚିତ୍ତରେ ତାହାର ପଛେ ପଛେ ଗମନ କଲା ।

ପ୍ରତିଦିନ ଶୋକ ଓ ଭୟର ସହସ୍ର ସହସ୍ର କାରଣ ମୂଢ଼ ଲୋକମାନଙ୍କ ପ୍ରତି ଘଟିଥାଏ, କିନ୍ତୁ ପଣ୍ଡିତମାନଙ୍କୁ ଶୋକ ଓ ଭୟ ଆକ୍ରମଣ କରିପାରେ ନାହିଁ । ସଂସାରୀମାନଙ୍କ ଅବଶ୍ୟ କର୍ତ୍ତବ୍ୟ ଏହି ଯେ, ସେମାନେ ପ୍ରତିଦିନ ଶଯ୍ୟାରୁ ଉଠି ମରଣ, ରୋଗ ଓ ଶୋକ ମଧ୍ୟରୁ କୌଣସି ଗୋଟାଏ ନିଶ୍ଚୟ ଘଟିବ ବୋଲି ଆଶଙ୍କା କରି କାର୍ଯ୍ୟ

---

ଦୁଃଖ ସମୟରେ ସୁଖ କରିବ ସେବନ,

କରିବେ । ଅନନ୍ତର ବ୍ୟାଧ ଅତି ଶୀଘ୍ର ଭୂମିରେ ଗୋଟାଏ ଜାଲ ବିସ୍ତାର କଲା, ପୁଣି ଚତୁର୍ଦ୍ଦିଗରେ ତଣ୍ଡୁଳକଣା ବିଞ୍ଚିଦେଇ କୌଣସି ଏକ ଗୁପ୍ତ ସ୍ଥାନରେ ଲୁଚି ରହିଲା ।

ଏହି ସମୟରେ ଚିତ୍ରଗ୍ରୀବ ନାମକ କପୋତରାଜ ଦୈବ କ୍ରମେ ସପରିବାରରେ ଆକାଶରେ ବିଚରଣ କରୁଁ କରୁଁ ହଠାତ୍ ସେହି ତଣ୍ଡୁଳ କଣା ସମୂହ ଦେଖିଲା । ତାହା ଦେଖି କପୋତ-ମାନଙ୍କର ଲୋଭ ଜାତ ହେବା ବିଚିତ୍ର ନୁହେ । ପରେ କପୋତରାଜ ତାହାର ତଣ୍ଡୁଳପ୍ରିୟ ଅନୁଚରମାନଙ୍କୁ କହିଲା—ଦେଖ, ଏହି ଆକୃଷ୍ଟ ବନରେ ଏହି ସବୁ ଯେ ପଡ଼ି ରହିଅଛି, ତାହା କଣ ତଣ୍ଡୁଳ କଣା ହୋଇପାରେ ? ଯଦି ହୋଇଥାଏ, ତାହାହେଲେ, ଏହି ନିର୍ଜନ ଅରଣ୍ୟକୁ କିଏ ତଣ୍ଡୁଳକଣା ଆଣିଲା ? ତୁମ୍ଭେମାନେ ଆଲୋଚନା କର, ମୋତେ ଏହା କିଛି ଭଲ ଦିଶୁ ନାହିଁ; କେବଳ ଅନିଷ୍ଟର ସୂଚନା ମିଳୁଅଛି ମାତ୍ର । କଙ୍କଣ ଲୋଭରେ ଯେପରି ପଥିକ ବୃଦ୍ଧ ବ୍ୟାଘ୍ରଦ୍ୱାରା ବିନଷ୍ଟ ହୋଇଥିଲା, ହୁଏତ ଏହି ତଣ୍ଡୁଳକଣା ଲୋଭରେ ପଡ଼ି ଆମ୍ଭମାନଙ୍କୁ ମଧ୍ୟ ସେପରି ମରିବାକୁ ହେବ । କପୋତଗଣ ପ୍ରଶ୍ନକଲେ, 'ତାହା କିପରି ଘଟିଥିଲା ?'

---

# ପ୍ରଥମ କଥା

## ବୃଦ୍ଧ ବ୍ୟାଘ୍ର ଓ ପଥିକ

ଅନୁଚରଗଣଙ୍କ ପ୍ରଶ୍ନର ଉତ୍ତରରେ ଚିତ୍ରଗ୍ରୀବ କହିଲା—

ମୁଁ ଏକଦିନ ଏହିପରି ଦକ୍ଷିଣାରଣ୍ୟରେ ଖାଦ୍ୟ ନିମିତ୍ତ ଭ୍ରମଣ କରୁଥିଲି, ଏପରି ସମୟରେ ଦେଖିଲି ଗୋଟିଏ ବୃଦ୍ଧବ୍ୟାଘ୍ର ସ୍ନାନପରେ ହସ୍ତରେ ପବିତ୍ର କୁଶ ଧରି ବ୍ରାହ୍ମଣ ତୁଲ୍ୟ ପୁଷ୍କରିଣୀ ତୀରରେ ବସି ରହିଅଛି; ପୁଣି କ୍ରମାଗତ ଚିତ୍କାର କରି କହୁଅଛି, 'ହେ ପଥିକମାନେ, ଏହି ସୁବର୍ଣ୍ଣ କଙ୍କଣ ଗ୍ରହଣ କର ।' ଏହାଶୁଣି କୌଣସି ଏକ ଲୋଭୀ ପଥିକ ଭାବିଲା, 'ବାଃ ! ସୌଭାଗ୍ୟବଳରୁ ଏପରି ଲାଭ ଘଟିଥାଏ, ତଥାପି ଏଥି ସକାଶେ ହଠାତ୍ ଜୀବନକୁ ବିପଦରେ ପକାଇବା ଉଚିତ ନୁହେ—ଏହା ଅବଶ୍ୟ ପ୍ରାଣର ସନ୍ଦେହ ସ୍ଥଳ । ଅନିଷ୍ଟକର ପଦାର୍ଥରୁ ଇଷ୍ଟଲାଭ ଘଟିଲେ ସୁଦ୍ଧା ଶେଷରେ ମଙ୍ଗଳ ହୁଏ ନାହିଁ; ବିଷ ମିଶ୍ରିତ ହେଲେ ଅମୃତ ସୁଦ୍ଧା ମରଣର କାରଣ ହୁଏ । କିନ୍ତୁ ଅର୍ଥ ଉପାର୍ଜନ କରିବାକୁ ହେଲେ ସକଳ ସ୍ଥାନରେ ପୁଣି ସକଳ ସମୟରେ ପ୍ରାଣ ସଂଶୟକର ବ୍ୟାପାରରେ ପ୍ରବୃତ୍ତ ହେବାକୁ ହୁଏ । କଥିତ ଅଛି, ବିପଦଜନକ କାର୍ଯ୍ୟରେ ହାତ ନ ଦେଲେ ମନୁଷ୍ୟ ସୁଖ ସମ୍ପତ୍ତି ଲାଭ କରି ନ ପାରେ; କିନ୍ତୁ ସେହି ଆତ୍ମନାଶକର କାର୍ଯ୍ୟରେ ରତ ହୋଇ ପାରିଲେ ସେ ନିଶ୍ଚୟ ଐଶ୍ୱର୍ଯ୍ୟ ଲଭିକରି ସୁଖରେ ଓ ଆନନ୍ଦରେ

---

କର୍ମ ଦୋଷେ କ୍ରମେ କ୍ରମେ ହୁଏ ଅଧୋଗତି,

ଜୀବନ ଚଳାଇ ପାରେ । ଅତଏବ ମୁଁ ପ୍ରଥମରେ ଏହା ଅନୁସନ୍ଧାନ କରି ଦେଖିବି ।'

ଏହିପରି ଭାବି ପଥିକ ଉଚ୍ଚସ୍ୱରରେ ପ୍ରଶ୍ନ କଲା, 'ତୁମ୍ଭ କଙ୍କଣ କେଉଁଠାରେ ?' ବ୍ୟାଘ୍ର ହାତ ଟେକି କଙ୍କଣଟି ଦେଖାଇଲା । ପଥିକ କହିଲା, 'ମୁଁ ତୁମ୍ଭ ପରି ଭୟଙ୍କର ହିଂସ୍ର ପଶୁକୁ କିପରି ବିଶ୍ୱାସ କରି ପାରିବି !' ତା ପରେ ବ୍ୟାଘ୍ର ଉତ୍ତର କଲା, 'ହେ ପଥିକ, ତେବେ ଶୁଣ । ଯୌବନାବସ୍ଥାରେ ମୁଁ ଅତ୍ୟନ୍ତ ଦୁଷ୍ଟ ଓ ନିଷ୍ଠୁର ଥିଲି । ମୁଁ ଅଗଣ୍ୟ ଗୋରୁ, ମନୁଷ୍ୟ ବଧ କରିଥିଲି, ସେହି ପାପ ହେତୁରୁ ମୋର ସ୍ତ୍ରୀ ଓ ପୁତ୍ରକନ୍ୟା ସମସ୍ତେ ମରିଯାଇଅଛନ୍ତି । ସୁତରାଂ ମୁଁ ବଂଶହୀନ ହୋଇଅଛି—ଏପରିକି, ଏବେ ଆଉ ମୋର ନିଜର ବୋଲି କେହି ନାହିଁ । କିନ୍ତୁ ବର୍ତ୍ତମାନ ଜଣେ ଧାର୍ମିକ ପୁରୁଷ ଦାନବ୍ରତ ଆଚରଣ କରିବାକୁ ମୋତେ ଉପଦେଶ ଦେଇଅଛନ୍ତି । ମୁଁ ସେହି ଉପଦେଶ ଅନୁସାରେ ପ୍ରତ୍ୟହ ପ୍ରାତଃସ୍ନାନ କରି ଦାନ କରୁଅଛି । ମୁଁ କିପରି କଠୋର ବ୍ରତାବଲମ୍ବୀ, ତାହା ତୁମ୍ଭେ ମୋ ବେଶରୁ ସ୍ପଷ୍ଟ ଜାଣିପାରୁଥିବ । ବର୍ତ୍ତମାନ ମୁଁ ବୃଦ୍ଧ, ମୋର ନଖ, ଦନ୍ତ ନଷ୍ଟ—ସୁତରାଂ କିଏ ମୋତେ ଅବିଶ୍ୱାସ କରିବ ? ଧର୍ମର ଆଠ ଗୋଟି ପଥ ଅଛି, ଯଥା—ଯଜ୍ଞ, ଅଧ୍ୟୟନ, ଦାନ, ତପସ୍ୟା, ସତ୍ୟ କଥନ, ସହିଷ୍ଣୁତା, କ୍ଷମା ଓ ଲୋଭପରିତ୍ୟାଗ । ତନ୍ମଧ୍ୟରୁ ଯାଗାଦି ପ୍ରଥମ ଚାରିଗୋଟି ଆତ୍ମଗରିମା ପ୍ରକାଶ କରିବା ନିମିତ୍ତ ହିଁ ଅନୁଷ୍ଠିତ ହୋଇପାରେ; କିନ୍ତୁ ଶେଷ ଚାରିଗୋଟି କେବଳ ଉଚ୍ଚମନା ମହାପୁରୁଷମାନଙ୍କଠାରେ ହିଁ ଦେଖା ଯାଇଥାଏ ।

'ମୁଁ ଏତେଦୂର ଲୋଭ ଜୟ କରି ପାରିଅଛି ଯେ, ନିଜର ବହୁମୂଲ୍ୟ କଙ୍କଣଟି କାହାକୁ ହେଲେ ଦାନ କରିବାକୁ ଇଚ୍ଛୁକ

ଅଛୁ । ତଥାପି ,ବ୍ୟାଘ୍ର ମନୁଷ୍ୟ ଖାଏ’ ଏହି ଲୋକାପବାଦ ଘୁଞ୍ଚିବାର ନୁହେ । ମୁଁ ଧର୍ମଶାସ୍ତ୍ର ମଧ୍ୟ ପାଠ କରିଅଛୁ । କହୁଅଛୁ ଶୁଣ—

‘ନିଜର ପ୍ରାଣ ଯେପରି ପ୍ରିୟ, ଅନ୍ୟ ପ୍ରାଣିମାନଙ୍କ ଜୀବନକୁ ମଧ୍ୟ ସେହିପରି ପ୍ରିୟଜ୍ଞାନ କରିବା ଉଚିତ; ଏହି କାରଣରୁ ସାଧୁ-ବ୍ୟକ୍ତିମାନେ ନିଜର ପରି ଅପର ଜୀବମାନଙ୍କ ପ୍ରତି ଦୟା ଦେଖାଇ-ଥାନ୍ତି । ପୁଣି ଆତ୍ମପରୀକ୍ଷାଦ୍ୱାରା ଲୋକମାନେ ପ୍ରତ୍ୟାଖ୍ୟାନ, ଦାନ, ସୁଖ, ଦୁଃଖ ଓ ପ୍ରିୟ ଅପ୍ରିୟ ବିଷୟରେ ପ୍ରମାଣପ୍ରାପ୍ତ ହୁଅନ୍ତି । ଯେଉଁ ପୁରୁଷ ପରସ୍ତ୍ରୀକୁ ମାତୃ ତୁଲ୍ୟ, ପର ଦ୍ରବ୍ୟକୁ ଲୋଷ୍ଟ୍ର ସମ ଓ ସକଳ ପ୍ରାଣିଙ୍କୁ ନିଜର ପରି ଜ୍ଞାନ କରେ ସେ ଏକା ପ୍ରକୃତ ପଣ୍ଡିତ । ତୁମ୍ଭେ ଅତ୍ୟନ୍ତ ଦରିଦ୍ର ପରି ଦେଖା ଯାଉଅଛ, ସେଥି ଯୋଗୁଁ ତୁମ୍ଭଙ୍କୁ ଦାନ କରିବା ନିମିତ୍ତ ଏତେ ଚେଷ୍ଟା କରୁଅଛୁ ।

‘ଶାସ୍ତ୍ରରେ ଲେଖାଅଛି—ହେ କୁନ୍ତୀ ନନ୍ଦନ ! ଦରିଦ୍ରମାନଙ୍କର ଭରଣପୋଷଣ କର, ଧନବାନକୁ ଧନଦାନ କରନାହିଁ । ଔଷଧ ପୀଡ଼ିତ ବ୍ୟକ୍ତିରହିଁ ଉପକାରରେ ଲାଗେ; ଯେ ପୀଡ଼ିତ ନୁହେ, ତାହାକୁ ଔଷଧ ଦେବାର ପ୍ରୟୋଜନ ନାହିଁ । ଦାନ କରିବା କର୍ତ୍ତବ୍ୟ—ଏହି ଭାବନାରେ ସୂର୍ଯ୍ୟଗ୍ରହଣ ପ୍ରଭୃତି କାଳରେ, କୁରୁକ୍ଷେତ୍ରାଦି ସ୍ଥାନରେ, ଯାହାଠାରୁ ଉପକାରର କୌଣସି ପ୍ରତ୍ୟାଶା ନାହିଁ, ଏପରି ସତ୍ପାତ୍ରରେ ଯେଉଁ ଦାନ କରାଯାଏ, ତାହାହିଁ ସାତ୍ତ୍ୱିକ ଦାନ ବୋଲି ପଣ୍ଡିତମାନେ ସ୍ଥିର କରିଅଛନ୍ତି । ଅତଏବ ଏହି ସରୋବରରେ ସ୍ନାନକରି ସୁବର୍ଣ୍ଣ କଙ୍କଣ ଗ୍ରହଣ କର ।’

ଏହି କଥାରେ ପଥିକର ବିଶ୍ୱାସ ହେଲା । ସେ ଲୋଭ ଯୋଗୁଁ ସରୋବରରେ ସ୍ନାନ କରିବା ନିମିତ୍ତ ଯେପରି ପ୍ରବେଶ କଲା,

---

ସେତିକିବେଳେ ଗଭୀର ପଙ୍କରେ ନିମଗ୍ନ ହୋଇଗଲା, ଆଉ ଉଠି ଯାଇ ପାରିଲା ନାହିଁ । ବ୍ୟାଘ୍ର ପଥିକକୁ ପଙ୍କରେ ପଡ଼ିବାର ଦେଖି କହିଲା, 'ଆହା ପଙ୍କରେ ଲାଗିଗଲ ? ମୁଁ ତୁମ୍ଭଙ୍କୁ ଉଠାଇ ଆଣିବି—ଭୟ କର ନାହିଁ ।' ଏହା କହି ବ୍ୟାଘ୍ର ଧୀରେ ଧୀରେ ନିକଟକୁ ଯାଇ ପଥିକକୁ ଆକ୍ରମଣ କଲା । ପଥିକ ମନେ ମନେ ଚିନ୍ତା କରିବାକୁ ଲାଗିଲା—

'ଧର୍ମଶାସ୍ତ୍ର ଓ ବେଦପାଠରେ ମଧ୍ୟ ଦୁରାତ୍ମାର ହୃଦୟରେ କଦାପି ଧର୍ମଭାବ ଜାତ ହୋଇ ନ ପାରେ । ଏହି ସଂସାରରେ ସ୍ୱଭାବ ହିଁ ପ୍ରବଳ । ତୃଣ ଭକ୍ଷଣ କଲେ ସୁଦ୍ଧା ଗାଭୀର ଦୁଗ୍ଧ ସ୍ୱଭାବତଃ ସୁମିଷ୍ଟ । ଅତଏବ ମୁଁ ଏହି ହିଂସ୍ର ଜନ୍ତୁକୁ ବିଶ୍ୱାସ କରି ଉଚିତ କାର୍ଯ୍ୟ କରିନାହିଁ । କଥା ଅଛି—

ଶୃଙ୍ଗୀ, ନଦୀ, ଶ୍ୱାପଦ, ନଖଧାରୀ, ଅସ୍ତ୍ରଧାରୀ, ସ୍ତ୍ରୀ ଏବଂ ରାଜା—ଏମାନଙ୍କୁ କଦାଚ ବିଶ୍ୱାସ କରିବ ନାହିଁ ।' ଲୋକମାନେ ସକଳଙ୍କ ସ୍ୱଭାବ ହିଁ ପରୀକ୍ଷା କରନ୍ତି, ଅନ୍ୟ ଗୁଣ ପରୀକ୍ଷା କରନ୍ତି ନାହିଁ । କାରଣ ସ୍ୱଭାବ ସକଳ ଗୁଣକୁ ପରାସ୍ତ କରି ସମସ୍ତ ଉପରେ ପ୍ରଭୁତ୍ୱ କରିଥାଏ । ପାପଧ୍ୱଂସକାରକ ସହସ୍ରକିରଣ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ମଧ୍ୟ ଦୈବବଶରେ ରାହୁ ଗ୍ରାସ କରେ, ଅତଏବ ଜଗତରେ ଏହି ଲଲାଟଲିଖନ ଅନ୍ୟଥା କରିବାକୁ କେହି ହେଲେ ସମର୍ଥ ନୁହେ । ପଥିକ ଏହା ଚିନ୍ତା କରୁଅଛି, ଏପରି ସମୟରେ ବ୍ୟାଘ୍ର ତାହାକୁ ବଧ କରି ଭକ୍ଷଣ କଲା ।

ସେ କାରଣରୁ କହୁଅଛି—ଉତ୍ତମ ରୂପେ ବିବେଚନା ନ କରି କୌଣସି କାର୍ଯ୍ୟ କରିବା ଅନୁଚିତ । ଯେଉଁ ଅନ୍ନ ଭକ୍ଷିତ ହେଲେ ଶୀଘ୍ର ପରିପାକ ହୋଇଯାଏ, ପୁଣି ଉତ୍ତମ ବିଚାର କରି ଯାହା

---

କହ ସେ ଧନ କେସନେ ସୁଖର ଆଧାର ।

କ୍ଷୁଧାଯାଏ ଓ ଜରାଯାଏ ତାହା କଦାପି ଅନିଷ୍ଟ ଘଟାଏ ନାହିଁ ଏବଂ ସୁପଣ୍ଡିତ ପୁତ୍ର, ସୁଶିକ୍ଷିତା ପତ୍ନୀ ଓ ସୁସେବିତ ରାଜା—ଏମାନଙ୍କଠାରୁ ମଧ୍ୟ ଆଦୌ ଅମଙ୍ଗଳର ଆଶଙ୍କା ନାହିଁ । ଉତ୍ତମ ବିବେଚନା ଅଭାବରେ ଲୋଭୀ ପଥିକ ଜୀବନ ହରାଇଲା ।

ଏହି କଥା ଶୁଣି କୌଣସି ଏକ କପୋତ ସାହସ ଓ ଗର୍ବ ସହିତ କହିଲା, 'ବାଃ ଏ କଣ କହୁଅଛ ! ସମ୍ମୁଖରେ ଆହାର ଦେଖି ଛାଡ଼ିଯିବା କଣ ବୁଦ୍ଧିମାନର କାର୍ଯ୍ୟ ? କେହି ହେଲେ କୌଣସି କାଳରେ ବିପଦରେ ନ ପଡ଼ି ବନ ମଧ୍ୟରେ ଆହାର ପାଇବାର ଶୁଣାଯାଇ ଅଛି କି ? ବିପଦ ସମୟରେ ବୃଦ୍ଧମାନଙ୍କ କଥା ଶୁଣି କାର୍ଯ୍ୟ କରିବା ଉଚିତ; କିନ୍ତୁ ସମସ୍ତ ବିଷୟରେ ଏପରି ବିଚାର କରିବାକୁ ଗଲେ ଭୋଜନ କରିବା ଅସମ୍ଭବ ହୋଇ ଉଠିବ । ଏହି ଧରାତଳରେ ସକଳ ଖାଦ୍ୟ ପାନୀୟ ଦ୍ରବ୍ୟ ଭୟଯୁକ୍ତ । ତେବେ କେଉଁ ଦ୍ରବ୍ୟରେ ଇଚ୍ଛା ଜାତ ହେବ ? କିପରି ବା ପ୍ରାଣଧାରଣ କରାଯିବ ? ଦ୍ୱେଷୀ, ନିନ୍ଦକ, ଅସନ୍ତୁଷ୍ଟ, କ୍ରୋଧଶାଳୀ, ସତତ ଶଙ୍କାଯୁକ୍ତ ଓ ପରଭାଗ୍ୟୋପଜୀବୀ—ଏହି ଛ'ଜଣ ଦୁଃଖଭାଗୀ ହୁଅନ୍ତି ।'

ଏହା ଶୁଣି କପୋତଗଣ ସେହି ସକଳ ତଣ୍ଡୁଳ ନିକଟରେ ଯାଇ ବସିଲେ । କାରଣ—ଯେଉଁମାନେ ବହୁ ଶାସ୍ତ୍ର ପାଠ କରି ବିପୁଳ ଜ୍ଞାନ ଅର୍ଜ୍ଜନ କରିଅଛନ୍ତି ଏବଂ ଜନସାଧାରଣଙ୍କ ସନ୍ଦେହ ଦୂର କରିବାକୁ ସମର୍ଥ, ସେମାନେ ସୁଦ୍ଧା ଲୋଭହେତୁ ପଡ଼ି କ୍ଲେଶ ଭୋଗ କରିଥାନ୍ତି । ପୁଣି ଲୋଭରୁ କାମ, କ୍ରୋଧ, ମୋହ ଓ ପାପ ଜାତ ହୁଏ ଏବଂ ପରିଶେଷରେ ମୃତ୍ୟୁ ଘଟେ ।

ଅନନ୍ତର କପୋତମାନେ ଜାଲରେ ବଦ୍ଧ ହେଲେ । ତାପରେ ଯାହାର କଥାରେ ସମସ୍ତେ ସେଠାରେ ଯାଇ ବସିଥିଲେ, ସକଳ କପୋତ ତାହାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । କଥିତ ଅଛି— କୌଣସି ଦଳର ଅଗ୍ରଗାମୀ ହେବା ଉଚିତ ନୁହେ । କାର୍ଯ୍ୟ ସିଦ୍ଧ ହେଲେ ଫଳ ସମସ୍ତଙ୍କ ପକ୍ଷରେ ସମାନ; କିନ୍ତୁ କାର୍ଯ୍ୟରେ ବ୍ୟାଘାତ ଘଟିଲେ ସେହି ଅଗ୍ରଣୀ ବ୍ୟକ୍ତି ହିଁ ସମ୍ପୂର୍ଣ୍ଣ ଦୋଷର ଭାଗୀ ହୁଏ । ଇନ୍ଦ୍ରିୟର ଅଧୀନ ହେଲେ ନାନା ବିପଦ ଘଟେ ଏବଂ ଇନ୍ଦ୍ରିୟ ଜୟ କରିପାରିଲେ ସକଳ ପ୍ରକାର ସୁଖ ଲାଭ ହୁଏ । ବର୍ତ୍ତମାନ ଯେଉଁପଥ ଉତ୍ତମ ବୋଧ ହୁଏ, ସେହି ପଥରେ ଗମନ କରିବା ବିଧେୟ ।

ତାହାଙ୍କୁ ସମସ୍ତେ ତିରସ୍କାର କରିବାର ଦେଖି ଚିତ୍ରଗ୍ରୀବ କହିଲା, 'ଏଥିରେ ଏହାର ଦୋଷ ନାହିଁ । ଏହି ଜାଲରେ ଧୃତ ହେବା ଆମ୍ଭମାନଙ୍କ ଅଦୃଷ୍ଟରେ ଥିଲା । ବିପଦ ଘଟିବା ସମୟରେ ହିତକାଙ୍କ୍ଷୀ ବ୍ୟକ୍ତି ମଧ୍ୟ ସେହି ବିପଦର କାରଣ ହୋଇ ଉଠେ । ଦେଖ ଗାଈର ଜଙ୍ଘ ତାହାର ବତ୍ସର ଅତିଶୟ ହିତକାରିଣୀ ହେଲେହେଁ, ଦୋହନ ସମୟରେ ବନ୍ଧନ-ସ୍ତମ୍ଭ ହୋଇଯାଏ । ବିପଦ ସମୟର 'ବନ୍ଧୁ' ପ୍ରକୃତ ବନ୍ଧୁ । କିନ୍ତୁ ଯେ ବିପଦ ବେଳେ ସାହାଯ୍ୟ ନ କରି ସେଥି ସକାଶେ କେବଳ ଗାଳି ଦିଏ, ସେ କଦାପି 'ବନ୍ଧୁ' ପଦ ପାଇ ନ ପାରେ । ପୁଣି ବିପଦ କାଳରେ ହତବୁଦ୍ଧି ହେବା କାପୁରୁଷର ଲକ୍ଷଣ; ଅତଏବ ଏତେବେଳେ ଧୈର୍ଯ୍ୟ ଧରି ଉପସ୍ଥିତ ବିପଦର ପ୍ରତିକାର ଚିନ୍ତା କରିବା ଆବଶ୍ୟକ । ଯେହେତୁ ବିପଦକାଳରେ ଧୈର୍ଯ୍ୟାବଲମ୍ବନ, ସମ୍ପତ୍ତି ସମୟରେ କ୍ଷମା ପ୍ରଦର୍ଶନ, ସଭାସ୍ଥଳରେ ବାକ୍‌ପଟୁତା, ରଣସ୍ଥଳରେ ବିକ୍ରମ-ପ୍ରକାଶ,

କର୍ମ ସେହି, ଯାହା ଅତି ପବିତ୍ର ନିର୍ମଳ ।

ସୁନାମ ପ୍ରାପ୍ତ ହେବାର ଅଭିଳାଷ, ଶାସ୍ତ୍ରାଲୋଚନାରେ ଆସକ୍ତି, ଏହି ସକଳ ମହାତ୍ମାମାନଙ୍କ ସ୍ୱଭାବସିଦ୍ଧ ଗୁଣ । ସମ୍ପଦରେ ଗର୍ବିତ ଓ ବିପଦରେ ଚିନ୍ତିତ ହେଉନଥିବା ଏବଂ ଯୁଦ୍ଧକ୍ଷେତ୍ରରେ ଶୌର୍ଯ୍ୟ ପ୍ରକାଶ କରୁଥିବା ଲୋକ ସଂସାରରେ ଅଳ୍ପ ଦେଖାଯାନ୍ତି । ପୁଣି ଦେଖ, ଏହି ସଂସାରରେ ଯେଉଁ ପୁରୁଷ ସମ୍ପତ୍ତି ଲାଭ କରିବାକୁ ଇଚ୍ଛା କରେ, ତାହାକୁ ନିଦ୍ରା, ତନ୍ଦ୍ରା, ଭୟ, କ୍ରୋଧ, ଆଳସ୍ୟ ଓ ଦୀର୍ଘସୂତ୍ରତା—ଏହି ଛଅଟି ଦୋଷ ପରିତ୍ୟାଗ କରିବାକୁ ହେବ । ଏବେ ମୋର କଥା ଶୁଣ, ସମସ୍ତେ ଏକାଠି ମିଶି ଜାଲ ଧରି ଉଡ଼ିଯିବା ଭଲ । କାରଣ—

'ସାମାନ୍ୟ ସାମାନ୍ୟ ବସ୍ତୁର ମିଳନ ମହତ୍ତ୍ୱ କାର୍ଯ୍ୟ ସାଧନ କରିପାରେ । ସାମାନ୍ୟ ମୃତ୍ତିକା ତୃଣରେ ପ୍ରସ୍ତୁତ ରଜ୍ଜୁଦ୍ୱାରା ମତ୍ତହସ୍ତୀକୁ ବନ୍ଧାଯାଇପାରେ । ଦୁର୍ବଳମାନେ ମଧ୍ୟ ଯଦି ଏକ ସଙ୍ଗରେ ମିଳି କାର୍ଯ୍ୟ କରନ୍ତି, ତାହାହେଲେ ସେମାନେ ଏପରି କାର୍ଯ୍ୟ କରିପାରନ୍ତି, ଯାହା ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପୃଥକ୍ ଭାବରେ କାମ କଲେ କଦାପି ସମ୍ପନ୍ନ କରି ପାରିବେ ନାହିଁ ।'

ଚିତ୍ରଗ୍ରୀବର ଏହି ଉପଦେଶ ଶୁଣି କପୋତମାନେ ଏକମନ ହୋଇ ଜାଲ ଧରି ଉଡ଼ିଗଲେ । ଅନନ୍ତର ସେହି ବ୍ୟାଧ ଦୂରରୁ ଯେତେବେଳେ ଦେଖିଲା ଯେ, ସେହି ପକ୍ଷୀମାନେ ତାହାର ଜାଲ ଧରି ପଳାଉଅଛନ୍ତି, ସେତେବେଳେ ସେ ପଶ୍ଚାତ୍ ପଶ୍ଚାତ୍ ଧାବିତ ହୋଇ ଭାବିଲା, "ଏହି ପକ୍ଷୀଗଣ ଏକମନ ହୋଇ ମୋର ଜାଲ ହରଣ କରିଅଛନ୍ତି । ଦେଖାଯାଉ କେତେଦୂର ଯିବେ । ଯେତେ-ବେଳେ ସେମାନେ ତଳକୁ ଖସିବେ, ସେତେବେଳେ ତ ମୋର

ସୁଜନେ ହୁଅନ୍ତି ଉପଦେଶର ଭାଜନ,

ଆସୁଅଛନ୍ତି ହେବେ ।” ଅନନ୍ତର କପୋତଗଣ ଦୃଷ୍ଟିର ଅଗୋଚର ହେବାରୁ, ବ୍ୟାଧ ସେମାନଙ୍କ ଅନୁସରଣ ନ କରି ନିବୃତ୍ତ ହେଲା ।

ତତ୍ପରେ ବ୍ୟାଧକୁ ନିବୃତ୍ତ ହେବାର ଦେଖି କପୋତମାନେ ପ୍ରଶ୍ନ କଲେ, 'ପ୍ରଭୋ, ବର୍ତ୍ତମାନ କଣ କରିବା ଉଚିତ ?' ଚିତ୍ରଗ୍ରୀବ ଉତ୍ତର କଲା—'ପିତା, ମାତା, ବନ୍ଧୁ ଏହି ତିନିଜଣ ସ୍ୱଭାବତଃ ହିତକାରୀ, ଏମାନଙ୍କ ବ୍ୟତୀତ ଅନ୍ୟ ସମସ୍ତେ ଉପକାର ଲାଭରେ ବା ଲାଭର ପ୍ରତ୍ୟାଶାରେ ହିତକାରୀ ହୋଇଥାନ୍ତି । ମୋର ଜଣେ ପ୍ରିୟବନ୍ଧୁ ଗଣ୍ଡକୀ ନଦୀତୀରରେ ସୁରମ୍ୟ ଚିତ୍ର ବନରେ ବାସ କରନ୍ତି । ତାହାଙ୍କ ନାମ ହିରଣ୍ୟକ—ସେ ମୂଷିକମାନଙ୍କ ରାଜା । ସେ ଏହି ଜାଲବନ୍ଧନ ଛିନ୍ନ କରିଦେବେ । ଚାଲ ସେଠାକୁ ଯିବା ।' ଏହା ସ୍ଥିର କରି ସମସ୍ତେ ହିରଣ୍ୟକ ନିକଟକୁ ଗମନ କଲେ ।

"ଭୟେ ଭୟେ ଶତମୁଖ କରିଣ ବିବର,
ମାତଙ୍ଗ ମୂଷିକ ଥିଲା ତାହାର ଭିତର ।"

ହିରଣ୍ୟକ କପୋତମାନଙ୍କ ଅବତରଣ ଶବ୍ଦରେ ଚକିତ ହୋଇ ନିଃଶବ୍ଦରେ ରହିଲା । ଚିତ୍ରଗ୍ରୀବ କହିଲା—'ସଖେ ହିରଣ୍ୟକ, ଆମ୍ଭମାନଙ୍କ ସହିତ ଆଳାପ କରୁ ନାହିଁ କି ହେତୁ ?' ମୂଷିକରାଜ ସେହି କଣ୍ଠସ୍ୱର ଶ୍ରବଣ କରି ଚିତ୍ରଗ୍ରୀବକୁ ଚିହ୍ନିବାମାତ୍ରେ ଦ୍ରୁତ-ବେଗରେ ନିର୍ଗତ ହୋଇ କହିଲା, 'ଓହୋ, କି ଆନନ୍ଦର ବିଷୟ ! ବଡ଼ ସୌଭାଗ୍ୟବାନ୍ ମୁଁ ! ପ୍ରିୟବନ୍ଧୁ ଚିତ୍ରଗ୍ରୀବ ଆସି ଉପସ୍ଥିତ ! ଯେଉଁ ବ୍ୟକ୍ତିର ବନ୍ଧୁ ସହିତ ସଦାଳାପ, ଏକତ୍ରବାସ ଓ ନିର୍ଜ୍ଜନରେ କଥୋପକଥନ ଘଟେ, ସେ ବ୍ୟକ୍ତିହିଁ ଏହି ସଂସାରରେ ଅତି ପୁଣ୍ୟବାନ ।'

---

ଉପଦେଶଯୋଗ୍ୟ କେବେ ନ ହୁଏ କୁଜନ ।

ଅନନ୍ତର ହିରଣ୍ୟକ କପୋତମାନଙ୍କୁ ପାଶବଦ୍ଧ ଦେଖି କ୍ଷଣକାଳ ବିସ୍ମିତ ହୋଇ ରହି ପ୍ରଶ୍ନ କଲା—'ସଖେ ! ଏ କଣ ?' ଚିତ୍ରଗ୍ରୀବ ଉତ୍ତର କଲା—'ଭାଇ ଆଉ କଣ ହେବ । ଏହା ଆମ୍ଭମାନଙ୍କ ପୂର୍ବଜନ୍ମକୃତ ଦୁଷ୍କର୍ମର ଫଳ ।'

'ଯେ କାରଣେ ଯେ ଉପାୟେ ଯଥା ଯେ ପ୍ରକାରେ,
ଯେ ସମୟେ ଯେବା ଯେତେ ପାପ ପୁଣ୍ୟ କରେ,
ସେ କାରଣେ ସେ ଉପାୟେ ତଥା ସେ ପ୍ରକାରେ,
ସେ ସମୟେ ତେତେ ଫଳ ଭୁଞ୍ଜେ ଦୈବ-କରେ ।'

"ରୋଗ, ଶୋକ, ପରିତାପ, ବନ୍ଧନ, ବିପଦ ପୁଣି ଏହିପରି ଯେ କୌଣସି ଅନିଷ୍ଟପାତ, ନିଜ ଅପରାଧ ହେତୁ ହିଁ ଘଟିଥାଏ ।"

ହିରଣ୍ୟକ ଏହା ଶୁଣି କୌଣସି ଉତ୍ତର ନ ଦେଇ ଅତି ଶୀଘ୍ର ଜାଲନିକଟକୁ ଧାଇଁଗଲା ଏବଂ ଯେଉଁ ସକଳ ରଜ୍ଜୁ ଚିତ୍ରଗ୍ରୀବକୁ ଆବଦ୍ଧ କରି ରଖିଥିଲା, ସେହି ସମସ୍ତ ଦାନ୍ତରେ କାଟିବାକୁ ଆରମ୍ଭ କଲା । ଚିତ୍ରଗ୍ରୀବ କହିଲା, 'ସଖେ ! ଏହା କରନାହିଁ । ପ୍ରଥମରେ ମୋ ଆଶ୍ରିତ ଅନୁଚରମାନଙ୍କର ବନ୍ଧନ ଛେଦନ କରି, ପରେ ମୋର ବନ୍ଧନ-ରଜ୍ଜୁ ଛିନ୍ନ କରିବ ।'

ହିରଣ୍ୟକ କହିଲା, 'ସଖେ ! ମୋର ଶକ୍ତି ଅଳ୍ପ ଏବଂ ମୋ ଦାନ୍ତଗୁଡ଼ିକ ଅତ୍ୟନ୍ତ କୋମଳ, ଅତଏବ ସମସ୍ତଙ୍କ ବନ୍ଧନ ଛିନ୍ନ କରିବାକୁ କିପରି ସମର୍ଥ ହେବ ? ନାହିଁ ନାହିଁ, ଯେତେକ୍ଷଣ ମୋର ଦାନ୍ତ ତୁଟିଥାଏ, ତେତେକ୍ଷଣ ମୁଁ ପ୍ରଥମରେ ତୁମ୍ଭର ବନ୍ଧନ ଛେଦନ କରିବି ଏବଂ ପରେ ଅନ୍ୟାନ୍ୟମାନଙ୍କ ନିମିତ୍ତ ଯଥାସାଧ୍ୟ

---

ଦୁର୍ଜନର ସଙ୍ଗେ ନ ରହିବ କଦାଚନ,

ଚେଷ୍ଟା କରିବ । ନୀତି ଶାସ୍ତ୍ରରେ ଲେଖାଅଛି—ରାଜା ପକ୍ଷରେ ନିଜ ଜୀବନ ନଷ୍ଟକରି ପ୍ରଜାମାନଙ୍କ ଜୀବନ ରକ୍ଷା କରିବା ଅନୁଚିତ । ସମସ୍ତେ କିଣ ସର୍ବାଗ୍ରେ ନିଜ ପ୍ରାଣ ରଖିବାକୁ ଚେଷ୍ଟା କରନ୍ତି ନାହିଁ ?' କପୋତ ରାଜା କହିଲା—'ସଖେ ! ତୁମ୍ଭେ କହିବା କଥା ସମ୍ପୂର୍ଣ୍ଣ ସତ୍ୟ, ତଥାପି ତୁମ୍ଭେ ପ୍ରଥମରେ ଏମାନଙ୍କୁ ମୁକ୍ତକର ।'

ମୂଷିକରାଜ କହିଲା—"କଥିତ ଅଛି ଭବିଷ୍ୟତ୍ ବିପଦରୁ ରକ୍ଷା ପାଇବା ନିମିତ୍ତ ଅର୍ଥ ସଞ୍ଚୟ କରିବା ଉଚିତ, ଅର୍ଥ ଦେଇ ସୁଦ୍ଧା ପତ୍ନୀକୁ ରକ୍ଷା କରିବା ବିଧେୟ ଏବଂ ଆବଶ୍ୟକ ହେଲେ ଅର୍ଥ ଓ ପତ୍ନୀ ଦେଇ ସୁଦ୍ଧା ଆପଣାକୁ ରକ୍ଷା କରିବା ଶ୍ରେୟସ୍କର । ପୁଣି ଦେଖ, ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ରକ୍ଷାର ହେତୁହିଁ ପ୍ରାଣ । ଅତଏବ ସେହି ପ୍ରାଣକୁ ଯେ ନଷ୍ଟ କରେ ସେ କିଣ ନଷ୍ଟ ନ କରେ ? ପୁଣି ଯେଉଁ ବ୍ୟକ୍ତି ସେହି ପ୍ରାଣ ରକ୍ଷା କରେ, ସେ କିଣ ବା ରକ୍ଷା ନ କରେ ? ସୁତରାଂ କହୁଅଛି, ଭାଇ ଚିତ୍ରଗ୍ରୀବ ! ପର ନିମନ୍ତେ ନିଜ ଦେହ ନଷ୍ଟ କର ନାହିଁ ।"

ଚିତ୍ରଗ୍ରୀବ କହିଲା, 'ଭାଇ, ନୀତି ଏହା କହେ ସତ୍ୟ, କିନ୍ତୁ ମୁଁ ମୋର ଆଶ୍ରିତମାନଙ୍କ କଷ୍ଟ କଦାପି ଦେଖି ନ ପାରେ; ସେହି କାରଣରୁ ତୁମ୍ଭଙ୍କୁ ଏହି ଅନୁରୋଧ କରୁଅଛି । କାରଣ—ଜ୍ଞାନୀବ୍ୟକ୍ତି ପରୋପକାର ସାଧନ ନିମିତ୍ତ ଧନ, ଏପରି କି ଆପଣାର ପ୍ରାଣପର୍ଯ୍ୟନ୍ତ ବିସର୍ଜନ କରେ । ଧନ ଓ ପ୍ରାଣ ଚିରସ୍ଥାୟୀ ନୁହେ । ଅତଏବ ମନୁଷ୍ୟର ଜୀବନରକ୍ଷାର୍ଥ ଯେତେବେଳେ ଆମ୍ଭେମାନେ ଧନ, ପ୍ରାଣ ଓ ସର୍ବସ୍ୱ ଦାନ କରିପାରୁଁ, ସେତେବେଳେ ମୃତ୍ୟୁ ସାର୍ଥକ । କି ଜାତି, କି ସମ୍ପଦ, କି ବଳ ସକଳ ବିଷୟରେ ଏମାନେ ମୋ ତୁଲ୍ୟ ।

---

ତାର ସଙ୍ଗେ କେଉଁଠାକୁ ନ କର ଗମନ ।

ଏମାନଙ୍କ ବିପଦ ସମୟରେ ଯଦି ମୁଁ ଏମାନଙ୍କୁ ରକ୍ଷା କରିବାର ଚେଷ୍ଟା ନ କରେ, ତାହାହେଲେ ଏମାନେ ଯେ ମୋତେ ପ୍ରଭୁ ବୋଲି ସ୍ୱୀକାର କରନ୍ତି, ତାହାର ଫଳ କଣ ? ଅତଏବ ମୋ ପ୍ରାଣ ଗଲେ ପଛେ ଯାଉ, ମୋର ଏହି ଆଶ୍ରିତମାନଙ୍କର ଜୀବନ ରକ୍ଷା କର । ପୁଣି ମିତ୍ରବର ! ମାଂସ, ମୂତ୍ର, ବିଷ୍ଠା ଓ ଅସ୍ଥିଦ୍ୱାରା ନିର୍ମିତ ମୋର ଏହି ଅନିତ୍ୟ ଶରୀରର ଯତ୍ନ ତ୍ୟାଗ କରି ମୋର କୀର୍ତ୍ତିରକ୍ଷା କର । ଯଦି କ୍ଷଣଭଙ୍ଗୁର ମଳବାହୀ ଶରୀରର ବିନିମୟରେ ନିର୍ମଳ ଚିରସ୍ଥାୟୀ ଯଶଲାଭ କରିହୋଇପାରେ, ତାହାହେଲେ କି ଲାଭ ହୋଇ ନ ପାରେ ? ଶରୀର ଏବଂ ଗୁଣ ମଧ୍ୟରେ ଅଶେଷ ପ୍ରଭେଦ, ଶରୀର ଅଳ୍ପକାଳସ୍ଥାୟୀ ମାତ୍ର—ପ୍ରତିମୁହୂର୍ତ୍ତରେ ତାହାର ଧ୍ୱଂସର ଆଶଙ୍କା ହୁଏ, କିନ୍ତୁ ଗୁଣର କୌଣସି କାଳରେ ହେଲେ ଧ୍ୱଂସ ହୁଏ ନାହିଁ ।'

ହିରଣ୍ୟକ ଯେତେବେଳେ ଚିତ୍ରଗ୍ରୀବର ଏହି ସମସ୍ତ କଥା ଶୁଣିଲା, ସେତେବେଳେ ତାହାର ହୃଦୟ ନିର୍ମଳ ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ସେ କହିଲା—'ସଖେ, ଯଥାର୍ଥ କହୁଅଛ । ଆଶ୍ରିତ-ମାନଙ୍କ ପ୍ରତି ତୁମ୍ଭର ଯେପରି ସ୍ନେହ, ମମତା, ତହିଁରେ ତୁମ୍ଭେ (କପୋତମାନଙ୍କର କାହିଁକି) ତ୍ରିଭୁବନର ପ୍ରଭୁ ହେବା ଉଚିତ ।' ଏହା କହି ହିରଣ୍ୟକ ସେମାନଙ୍କର ବନ୍ଧନ ଛିନ୍ନ କରିଦେଲା ଏବଂ ସମସ୍ତଙ୍କୁ ସାଦରେ ଅଭ୍ୟର୍ଥନା କରି କହିଲା—'ସଖେ ଚିତ୍ରଗ୍ରୀବ ! ଏପରି ଜାଲବନ୍ଧନ ଘଟିଅଛି ବୋଲି ଦୋଷ ଭାବି ନିଜକୁ ଅବଜ୍ଞା କର ନାହିଁ । ଯେଉଁ ପକ୍ଷୀ ଶତାଧିକ ଯୋଜନ ଦୂରରୁ ନିଜ ଖାଦ୍ୟ ଦେଖେ, ତାହାର ଜୀବନକାଳ ପୂର୍ଣ୍ଣ ହେଲେ, ଯେଉଁ

ଜାଲରେ ବଦ୍ଧ ହୋଇ ତାହାକୁ ମରିବାକୁ ହେବ; ସେ ସେହି ଜାଲ ଦେଖି ପାରେ ନାହିଁ । ଦୈବନିର୍ବନ୍ଧ ଅଖଣ୍ଡନୀୟ । ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ରାହୁ ଗ୍ରାସ କରେ ନାହିଁ ? ହସ୍ତୀ ଓ ସର୍ପ ବନ୍ଧନ ଦଶା ଭୋଗକରନ୍ତି ନାହିଁ ? ପଣ୍ଡିତମାନଙ୍କୁ କି କେବେ ଦୁର୍ଦ୍ଦଶା ଆକ୍ରମଣ କରେ ନାହିଁ ? ପକ୍ଷିଗଣ ଶୂନ୍ୟମାର୍ଗରେ ରହି ସୁଦ୍ଧା ଆପଦପ୍ରାପ୍ତ ହୁଅନ୍ତି, ମତ୍ସ୍ୟଗଣ ସମୁଦ୍ରର ଗଭୀର ଜଳରେ ବାସ କରି ସୁଦ୍ଧା ଚତୁର ଧୀବରମାନଙ୍କଦ୍ୱାରା ନିହତ ହୁଅନ୍ତି; ଏ ବିଷୟରେ ଦୁର୍ନୀତି ବା ସୁନୀତି କଣ ଅଛି ? ପୁଣି ସ୍ଥାନବିଶେଷର ଲାଭରେ ଗୁଣ କାହିଁ ? ଯେହେତୁ କାଳ ବିପଦରୂପ ହସ୍ତ ପ୍ରସାରଣ କରି ଦୂରରୁ ଗ୍ରହଣ କରିଥାଏ ।’

ହିରଣ୍ୟକ ତାହାର ଅତିଥିଗଣଙ୍କୁ ଏପରି ସାନ୍ତ୍ୱନା ପ୍ରଦାନ କରି ଖାଦ୍ୟାଦିଦ୍ୱାରା ପରମ ଯତ୍ନସହକାରେ ସେମାନଙ୍କର ସତ୍କାର କଲା । ପୁଣି ପରିଶେଷରେ ସେମାନଙ୍କୁ ଆଲିଙ୍ଗନ କରି ବିଦାୟ ଦେଲା । ଅତଃପର କପୋତମାନେ ଅଭୀଷ୍ଟସ୍ଥାନକୁ ଉଡ଼ିଗଲେ ଏବଂ ହିରଣ୍ୟକ ପୁନର୍ବାର ନିଜ ଗର୍ତ୍ତ ମଧ୍ୟରେ ପ୍ରବେଶ କଲା । ଯେତେ ହେଉ କମ୍ବା ବଡ଼ ହେଉ ଶତ ଶତ ଲୋକ ସହିତ ମିତ୍ରତା କରିବା ଉଚିତ—ମୂଷିକ କ୍ଷୁଦ୍ରକାୟ ହେଲେହେଁ କପୋତମାନଙ୍କୁ ବନ୍ଧନରୁ ମୁକ୍ତ କରିଦେଲା ।

———

# ଦ୍ୱିତୀୟ କଥା

ଲଘୁପତନକ ନାମକ କାକ କପୋତମାନଙ୍କ ସହିତ ଉଡ଼ି ଆସିଥିଲା ଏବଂ ଏହି ସମସ୍ତ ଘଟନା ଦେଖିଥିଲା । ସେ ଏଥିରେ ଏତେଦୂର ବିସ୍ମୟାବିଷ୍ଟ ହେଲା ଯେ, ପରିଶେଷରେ ସେ ଉଚ୍ଚୈଃ-ସ୍ୱରରେ ଡାକ ଦେଇ କହିଲା, 'ହେ ସଦସ୍ୟଚିତ୍ତ ମହାରାଜ ହିରଣ୍ୟକ ! ବାସ୍ତବିକ ତୁମ୍ଭେ ପ୍ରଶଂସାର ପାତ୍ର, ସେ କାରଣରୁ ମୁଁ ମଧ୍ୟ ତୁମ୍ଭର ମିତ୍ର ହେବାକୁ ଇଚ୍ଛା କରିଅଛି । ଅନୁରୋଧ କରୁଅଛି, ତୁମ୍ଭେ ମୋ ସହିତ ବନ୍ଧୁତା କରି ମୋତେ ଅନୁଗୃହୀତକର ।' ହିରଣ୍ୟକ ତାହାର କଥା ଶୁଣି ମଧ୍ୟ ଗର୍ତ୍ତରୁ ବାହାରିବାକୁ ଏକାନ୍ତ ଅନିଚ୍ଛୁକ । ବିବର ମଧ୍ୟରେ ରହି ଜିଜ୍ଞାସା କଲା—'ତୁମେ କିଏ ?' ସେ ଉତ୍ତର କଲା 'ମୁଁ ଲଘୁପତନକ ନାମକ ବାୟସ ।' ହିରଣ୍ୟକ ହାସ୍ୟ କରି କହିଲା—ତୁମ୍ଭ ସହିତ ମୋର ବନ୍ଧୁତା ଅସମ୍ଭବ । ସଂସାରରେ ଯେଉଁ ବସ୍ତୁ ସହିତ ଯାହାର ମିଳନ ସମ୍ଭବ, ବିଜ୍ଞଲୋକେ ସେହି ବସ୍ତୁ ସହିତ ହିଁ ସେହି ବସ୍ତୁର ମିଳନ ଘଟାଇଥାନ୍ତି । ମୁଁ ଭକ୍ଷ୍ୟ, ତୁମ୍ଭେ ଭୋକ୍ତା, ଅତଏବ ଆମ୍ଭମାନଙ୍କ ମଧ୍ୟରେ ପ୍ରଣୟ କିପରି ଘଟିବ ? ପୁଣି ପଣ୍ଡିତମାନଙ୍କ ମତରେ, ଭକ୍ଷ୍ୟ ଏବଂ ଭକ୍ଷକ ମଧ୍ୟରେ ପ୍ରୀତି କେବଳ ବିପତ୍ତିର କାରଣ ହୁଏ ମାତ୍ର, ଶୃଗାଳର ଷଡ଼ଯନ୍ତ୍ରରେ ପାଶବଦ୍ଧ ଏବଂ କାକର ସହାୟତାରେ ରକ୍ଷିତ ମୃଗହିଁ ଏହାର ଦୃଷ୍ଟାନ୍ତ ସ୍ଥଳ ।

ଲଘୁପତନକ ପ୍ରଶ୍ନକଲା—ତାହା କିପରି ?

ହିରଣ୍ୟକ କହିଲା—କହୁଅଛି ଶୁଣ ।

---

ସଂସାରର ଅନିତ୍ୟତା କରିଣ ସ୍ମରଣ,

## କାକ, ମୃଗ ଓ ଶୃଗାଳ

ମଗଧ ଦେଶରେ ଚମ୍ପକବତୀ ନାମରେ ଗୋଟିଏ ବିଶାଳ ଅରଣ୍ୟ ଅଛି । ସେଠାରେ ଏକ ମୃଗ ଓ ଏକ କାକ ବହୁ କାଳରୁ ପରମ ପ୍ରୀତିରେ ବାସ କରି ଆସୁଥିଲେ । ଏକଦା ଏକ ଶୃଗାଳ ଦେଖିଲା ଯେ, ମୃଗଟିଏ ଶରୀର ହୃଷ୍ଟପୁଷ୍ଟ ଏବଂ ସେ ଯଥେଷ୍ଟ ଭାବରେ ବିଚରଣ କରୁଅଛି । ଶୃଗାଳ ତାହାକୁ ଦେଖି ଭାବିଲା— ଆହା, କି ଉପାୟରେ ଏହି ମୃଗର କୋମଳ ସୁସ୍ୱାଦୁ ମାଂସ ଭକ୍ଷଣ କରି ପାରିବି ? ଯଦି ପ୍ରଥମରେ ମୋ ପ୍ରତି ଏହାର ବିଶ୍ୱାସ ଜନ୍ମାଇ ପାରେ, ତାହାହେଲେ ମୋ ମନୋରଥ ସିଦ୍ଧ ହେବ ।

ଏହିପରି ଚିନ୍ତା କରି ଶୃଗାଳ ମୃଗର ନିକଟବର୍ତ୍ତୀ ହେଲା ଏବଂ ନମସ୍କାର କରି ବିନୀତଭାବରେ କହିଲା, 'ବନ୍ଧୋ ! ଆଶା କରେ, ତୁମ୍ଭର ସମସ୍ତ କୁଶଳ ।' ମୃଗ କହିଲା—'ତୁମ୍ଭେ କିଏ ?' ସେ ଉତ୍ତର କଲା—'ମୁଁ କ୍ଷୁଦ୍ରବୁଦ୍ଧିନାମା ଜମ୍ବୁକ । ମୁଁ ଏହି ବନରେ ବନ୍ଧୁହୀନ ହୋଇ ମୃତବତ୍ ବାସ କରୁଥିଲି; କିନ୍ତୁ ବର୍ତ୍ତମାନ ତୁମ୍ଭଙ୍କୁ ବନ୍ଧୁ ସ୍ୱରୂପ ପାଇ ସୁଖୀ ହୋଇଅଛି । ଆଶା କରେ, ତୁମ୍ଭ ସହିତ ମୁଁ ନିବୃଜୀବନ ଯାପନ କରିବି । ସର୍ବଦା ତୁମ୍ଭର ଅନୁଚର ହୋଇ ରହିବି, ଏହା ମୋର ଏକାନ୍ତ ଅଭିଳାଷ ।' ମୃଗ କହିଲା, 'ଉତ୍ତମ କଥା—ତେବେ ତାହାହିଁ ହେଉ ।'

ଅତଃପର ଆଲୋକ-ମୁକୁଟ ଦିବସପତି ଅସ୍ତଗତ ହେବାପରେ ଉଭୟେ ଏକତ୍ର ମୃଗର ଆବାସକୁ ଗମନ କଲେ । ଠିକ୍ ସେହି ସ୍ଥାନରେ ମୃଗର ଏକ ପୁରାତନ ମିତ୍ର ସୁବୁଦ୍ଧି ନାମକ କାକ ଏକ

---

ଅହୋରାତ୍ର ପୁଣ୍ୟକର୍ମ କର ଆଚରଣ ।

ଚମ୍ପକ ବୃକ୍ଷର ଶାଖାରେ ବାସ କରୁଥିଲା । ସେ ଦୁଇ ଜଣଙ୍କୁ ଆସିବାର ଦେଖି କାକ ପଚାରିଲା—ସଖେ ମୃଗ, ତୁମ୍ଭ ସଙ୍ଗରେ ଥିବା ଏହି ଦ୍ୱିତୀୟ ବ୍ୟକ୍ତି କିଏ ?

ମୃଗ—'ଏ ଏକ ଶୃଗାଳ, ଆମ୍ଭମାନଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିବାକୁ ଇଚ୍ଛୁକ ହୋଇ ଅଛନ୍ତି ।'

ସୁବୁଦ୍ଧି—'ଭାଇ ! କୌଣସି ଆଗନ୍ତୁକ ବ୍ୟକ୍ତି ସହିତ ହଠାତ୍ ମିତ୍ରତା କରିବା ଉଚିତ ନୁହେଁ । ଅତଏବ ଏହାକୁ ସଙ୍ଗରେ ଆଣି ଭଲ କାର୍ଯ୍ୟ କରି ନାହଁ । କଥିତ ଅଛି—ଯେଉଁ ବ୍ୟକ୍ତିର କୁଳଶୀଳ ଅପରିଜ୍ଞାତ, ତାହାକୁ ସ୍ୱୀୟ ଗୃହରେ ବାସ ଦେବା ଅନୁଚିତ । ବୃଦ୍ଧ ଗୃଧ୍ର ଜରଦ୍‌ଗବ ଏକ ମାର୍ଜ୍ଜାରକୁ ବିଶ୍ୱାସ କରି କିପରି ନିଜ ଜୀବନ ହରାଇଥିଲା ତାହା ତୁମ୍ଭେ ଶୁଣି ନାହଁ ?'

ଶୃଗାଳ ଓ ମୃଗ ଦୁହେଁ କହିଲେ - ନାହିଁ, ଶୁଣି ନାହୁଁ । କହ ତାହା କଣ ।

---

## ଗୃଧ୍ର ଓ ବିଡ଼ାଳ

କାକ କହିଲା—

ଗଙ୍ଗାନଦୀ ତୀରରେ ଗୃଧକୂଟ ନାମକ ଏକ ପର୍ବତରେ ଏକ ପ୍ରକାଣ୍ଡ ବଟବୃକ୍ଷ ଅଛି । ସେହି ବୃକ୍ଷର କୋଟର ମଧ୍ୟରେ ଜରଦ୍‌ଗବ ନାମରେ ଏକ ବୃଦ୍ଧ ଗୃଧ୍ର ବାସ କରୁଥାଏ । ସେ ଦୁର୍ଭାଗ୍ୟବଶତଃ ତାହାର ଚକ୍ଷୁ ଓ ନଖ ହରାଇ ଥିଲା । ସେହି ବୃକ୍ଷବାସୀ ଅନ୍ୟାନ୍ୟ

ପକ୍ଷୀମାନେ ଏହାର ବୃଦ୍ଧାବସ୍ଥା ପ୍ରତି ଦୟା ପ୍ରକାଶ କରି ନିଜ ନିଜର ଆହାର୍ଯ୍ୟ ଦ୍ରବ୍ୟର କିୟଦଂଶ ନେଇ ତାହାକୁ ଦେଉଥାନ୍ତି ଏବଂ ତାହା ଖାଇ ସେ ପ୍ରାଣଧାରଣ କରିଥାଏ ।

ଏକଦା ଦୀର୍ଘକର୍ଣ୍ଣ ନାମକ ଏକ ବିଡ଼ାଳ ବୃକ୍ଷର ପକ୍ଷିଶାବକମାନଙ୍କୁ ଭକ୍ଷଣ କରିବା ମାନସରେ ସେଠାରେ ଆସି ଉପସ୍ଥିତ ହେଲା । ବିଡ଼ାଳକୁ ଦେଖି ପକ୍ଷିଶାବକମାନେ ଭୟରେ ବିହ୍ୱଳ ହୋଇ କୋଳାହଳ କରି ଉଠିଲେ । ଜରଦ୍‌ଗବ ଏହି କୋଳାହଳ ଶବ୍ଦ ଶ୍ରବଣ କରି ପ୍ରଶ୍ନ କଲା, 'କିଏ ଆସିଛୁ ?' ଦୀର୍ଘକର୍ଣ୍ଣ ଗୃଧ୍ରକୁ ଦେଖି ସଭୟରେ ଭାବିଲା—ହାୟ ! ଏଥର ମୁଁ ମଲି । ଅଥବା ଭୟ ଉପସ୍ଥିତ ନହେବା ପର୍ଯ୍ୟନ୍ତ ଭୟ କରିବା ବିଧେୟ, କିନ୍ତୁ ଭୟ ଉପସ୍ଥିତ ହେବାର ଦେଖିଲେ ତାହାର ଯଥୋଚିତ ପ୍ରତିକାର କରିବା କର୍ତ୍ତବ୍ୟ । ଯେତେବେଳେ ଏବେ ମୁଁ ଏହା ନିକଟକୁ ଆସିଲିଣି ତେବେ ଆଉ ପଳାୟନର ଉପାୟ ନାହିଁ । ଯାହାହେଉ, ବିଶ୍ୱାସ ଜନ୍ମାଇ ଏହା ନିକଟକୁ ଯିବି । ଏହା ଭାବି ଗୃଧ୍ରକୁ କହିଲା 'ଆର୍ଯ୍ୟ ! ମୁଁ ଆପଣଙ୍କୁ ଭକ୍ତିଭରେ ଅଭିବାଦନ କରୁଅଛି ।'

ଗୃଧ୍ର—କିଏ ତୁମ୍ଭେ ?

ଦୀର୍ଘକର୍ଣ୍ଣ—ମୁଁ ମାର୍ଜାର ।

ଗୃଧ୍ର—ଦୂର ହୁଅ; ନଚେତ୍ ଏବେ ତୋର ପ୍ରାଣବିନାଶ କରିବି ।

ବିଡ଼ାଳ—ମୁଁ ଯଦି ମୃତ୍ୟୁର ଯୋଗ୍ୟ, ତାହାହେଲେ ମରିବାକୁ ପ୍ରସ୍ତୁତ ଅଛି । କିନ୍ତୁ ପ୍ରଥମରେ ମୋ କଥା ଶୁଣିବା ହେଉନ୍ତୁ ।

---

ତାହାକୁହିଁ ପ୍ରାଜ୍ଞ ବୋଲି ଜାଣିବ ନିଶ୍ଚୟେ ।

ଆପଣଙ୍କୁ ପଚାରେ—କେଉଁଠାରେ କୌଣସି ସ୍ଥାନରେ କଣ ଜାତି ମାନଙ୍କେ ବଧ ବା ପୂଜ୍ୟ ହୋଇଥାଏ ? ନା ବ୍ୟବହାର ଦ୍ୱାରା ?

ଗୃଧ୍ର—ତେବେ ତୁମ୍ଭେ କ ନିମିତ୍ତ ଏଠାକୁ ଆସିଅଛ ?

ବିଡ଼ାଳ—'ମୁଁ ଏହି ଗଙ୍ଗାତୀରରେ ବାସ କରେ । ନିତ୍ୟ ତ୍ରିସନ୍ଧ୍ୟା ସ୍ନାନ ଏବଂ ନିରାମିଷ ଭୋଜନ କରେ । ବର୍ତ୍ତମାନ ବ୍ରହ୍ମଚାରୀ ହୋଇ ପବିତ୍ର ଚାନ୍ଦ୍ରାୟଣବ୍ରତ ଆଚରଣ କରୁଅଛି । ମୁଁ ପ୍ରତିଦିନ ପକ୍ଷୀମାନଙ୍କଠାରୁ ଶୁଣେ ଯେ, ଆପଣ ସର୍ବଦା ଧର୍ମଶାସ୍ତ୍ର ଆଲୋଚନା କରୁଅଛନ୍ତି, ପୁଣି ଆପଣ ସମସ୍ତଙ୍କ ବିଶ୍ୱାସଯୋଗ୍ୟ । ଏହା ଛଡ଼ା ଆପଣ ବୃଦ୍ଧ ଓ ପଣ୍ଡିତ—ମୋଠାରୁ ସକଳ ବିଷୟରେ ବଡ଼ । ଅତଏବ ଆପଣଙ୍କଠାରୁ ଧର୍ମ ସମ୍ବନ୍ଧୀୟ ଉପଦେଶ ପାଇବା ନିମିତ୍ତ ଏଠାକୁ ଆସିଅଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଆପଣ ସକଳ ଧର୍ମଶାସ୍ତ୍ର ପାଠ କରି ସୁଦ୍ଧା ଅତିଥିକୁ ବଧ କରିବାକୁ ଉଦ୍ୟତ ହୋଇଅଛନ୍ତି । ଗୃହସ୍ଥଧର୍ମ ସମ୍ବନ୍ଧରେ ଶାସ୍ତ୍ରରେ ଲେଖା ଅଛି—ଅତିଥି ଶତ୍ରୁ ହେଉ ବା ମିତ୍ର ହେଉ, ତାହାର ଯଥୋଚିତ ସତ୍କାର କରିବା ଉଚିତ । ବୃକ୍ଷ ନିଜ ଛେଦକକୁ ଛାୟାଦାନ କରେ ନାହିଁ ? ପୁଣି ଯଦି ଧନ ନ ଥାଏ ତାହାହେଲେ ମିଷ୍ଟବାକ୍ୟରେ ଅତିଥିର ଅଭ୍ୟର୍ଥନା କରିବା କର୍ତ୍ତବ୍ୟ । କାରଣ, ସାଧୁମାନଙ୍କ ଗୃହରେ ଆସନ, ବିଶ୍ରାମସ୍ଥାନ, ପାଦପ୍ରକ୍ଷାଳନ ନିମିତ୍ତ ଜଳ ଓ ସୁମଧୁର ସମ୍ଭାଷଣ—ଅନ୍ତତଃ ଏହି ଚାରିଗୋଟି ବିଷୟ କଦାପି ଅପ୍ରାପ୍ତ ନୁହେ । ସାଧୁ ଲୋକମାନେ ନିକୃଷ୍ଟ ପ୍ରାଣିମାନଙ୍କ ପ୍ରତି ମଧ୍ୟ ଦୟା କରିଥାନ୍ତି । ଦେଖନ୍ତୁ, ଚନ୍ଦ୍ର ଚଣ୍ଡାଳର ଗୃହରେ ମଧ୍ୟ କିରଣ ପକାଇଥାନ୍ତି ।'

---

ଏହି ଭବେ ଚିରଦିନ ଜୀବନ ନ ରହେ,

'ଅତିଥି ବୃଦ୍ଧ ହେଉ ବା ଯୁବକ ହେଉ କିମ୍ବା ଶିଶୁ ହେଉ ଧନୀ ହେଉ କିମ୍ବା ନିର୍ଦ୍ଧନ ହେଉ, ତାହା ପ୍ରତି ଭକ୍ତି ସହିତ ବ୍ୟବହାର କରିବା ଉଚିତ; କାରଣ ଅତିଥି ଗୁରୁତୁଲ୍ୟ ପୂଜନୀୟ । ଗୃହରେ ଯାହା କିଛି ଥାଏ, ତହିଁର ଶ୍ରେଷ୍ଠ ଅଂଶ ଅତିଥିକୁ ଦେଇ ସନ୍ତୁଷ୍ଟ କରିବା ବିଧେୟ । ଯାହା ଗୃହରୁ ଅତିଥି ଭଗ୍ନାଶ ହୋଇ ଫେରିଯାଏ, ସେହି ଗୃହସ୍ଥକୁ ସେହି ଅତିଥି ନିଜର ପାପସକଳ ଦେଇ ତାହାର ପୁଣ୍ୟରାଶି ନେଇଯାଏ । ନୀଚକୁଳରେ ଜାତ ହୋଇଥିବା ଲୋକ ମଧ୍ୟ ବର୍ଣ୍ଣଶ୍ରେଷ୍ଠ ବ୍ରାହ୍ମଣାଦିଙ୍କ ଗୃହରେ ସମାଗତ ହେଲେ ସେ ଅବଶ୍ୟ ପୂଜନୀୟ; କାରଣ ଅତିଥି ସକଳ ଦେବତାଙ୍କ ସମଷ୍ଟି ସ୍ୱରୂପ ।'

ଗୃଧ୍ର—'ବିଡ଼ାଳ ଜାତି ମାଂସ ଖାଇବାକୁ ସର୍ବଦା ଭଲ ପା'ନ୍ତି, ପୁଣି ଏଠାରେ ପକ୍ଷିଶାବକମାନେ ବାସ କରନ୍ତି, ସେଥି ସକାଶେ ମୁଁ ତୁମ୍ଭଙ୍କୁ ଏଠାରୁ ବାହାରି ଯିବାକୁ କହୁଥିଲି ।'

ବିଡ଼ାଳ ଏହିକଥା ଶୁଣି ଭୂମି ଓ କର୍ଣ୍ଣ ସ୍ପର୍ଶକରି କହିଲା, "ମାଂସ ଭକ୍ଷଣ ! କି ଭୟଙ୍କର କଥା ! ହାୟ ! ଆର୍ଯ୍ୟ ! ମୁଁ ସକଳ ଧର୍ମଶାସ୍ତ୍ର ପାଠକରି ମଧ୍ୟ ବୟସରେ ପୁଣି ଶୁଦ୍ଧଚିତ୍ତ ହୋଇ ଚାନ୍ଦ୍ରାୟଣବ୍ରତର ଅନୁଷ୍ଠାନ କରି ଆସୁଅଛି । ମୁଁ ପାପ ଜୟ କରିଅଛି । ଧର୍ମଶାସ୍ତ୍ର ସକଳ ପରସ୍ପର ବିରୋଧୀ ହେଲେହେଁ ଅହିଂସା ଯେ ପରମଧର୍ମ ସେ ବିଷୟରେ ସମସ୍ତଙ୍କର ଏକ ମତ । ଯେଉଁ ବ୍ୟକ୍ତି କୌଣସି ଅନ୍ୟାୟ କର୍ମ କରେ ନାହିଁ, ଅନ୍ୟାୟ କର୍ମ ଚିନ୍ତା କରେ ନାହିଁ ଏବଂ କାହାରି ହେଲେ କ୍ଷତି କରେ ନାହିଁ, ସେ ବ୍ୟକ୍ତିହିଁ ମୃତ୍ୟୁ ପରେ ସ୍ୱର୍ଗକୁ ଯାଏ । ଯେ ସର୍ବପ୍ରକାର ପ୍ରାଣୀହିଂସାରୁ ବିରତ, ଯେ ସକଳଙ୍କ

ଅତ୍ୟାଚାର ସହ୍ୟ କରିପାରେ, ପୁଣି ଯେ ସକଳଙ୍କ ଆଶ୍ରୟଭୂତ, ତାହା ପ୍ରତି ସ୍ୱର୍ଗଦ୍ୱାର ଚିର ଉନ୍ମୁକ୍ତ । 'ମରିବାକୁ ହେବ' ଏହା ଚିନ୍ତା କଲେ ନିଜ ମନରେ ଯେପରି ଦୁଃଖ ହୋଇପାରେ, ତାହା ଭାବି ଅନ୍ୟକୁ ସୁଦ୍ଧା ରକ୍ଷା କରିବା ଉଚିତ । ଧର୍ମ ହିଁ ମନୁଷ୍ୟର ଏକମାତ୍ର ବନ୍ଧୁ; ତାହା ଜୀବନ ଶେଷରେ ସୁଦ୍ଧା ସଙ୍ଗରେ ଯାଏ । ଅନ୍ୟ ସକଳ ବସ୍ତୁ ଶରୀରର ଧ୍ୱଂସ ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଏ । ଯେ ମାଂସ ଭକ୍ଷଣ କରେ ତାହାର କେବଳ କ୍ଷଣସ୍ଥାୟିନୀ ତୃପ୍ତି ଜନ୍ମେ ମାତ୍ର । ବନରେ ସ୍ୱଭାବତଃ ଜାତ ହେବା ଶାକ ଦ୍ୱାରା ଉଦର ପୂର୍ଣ୍ଣ ହେଉଥିବା ସ୍ଥଳେ ଏହି "ପୋଡ଼ା ପେଟ" ପାଇଁ କେଉଁ ଲୋକ ଜୀବହିଂସାରୂପ ମହାପାପ କରିବାକୁ ଇଚ୍ଛା କରେ, ବୋଲନ୍ତୁ ।"

ଗୃଧ୍ର ମନରେ ଏହିପରି ବିଶ୍ୱାସ ଜନ୍ମାଇ ମାର୍ଜାର ଦୀର୍ଘକର୍ଣ୍ଣ ସେହି ବୃକ୍ଷକୋଟରରେ ବାସ କଲା । କିଛିଦିନ ପରେ ବିଡ଼ାଳ ପ୍ରତିଦିନ ନିଜ କୋଟରକୁ ପକ୍ଷିଶାବକମାନଙ୍କୁ ନେଇ ଭକ୍ଷଣ କରିବାକୁ ଲଗିଲା । ଅତଃପର ଯେଉଁମାନଙ୍କ ଶାବକ ଭକ୍ଷିତ ହେଉଥିଲେ, ସେହି ପକ୍ଷିମାନେ ଶୋକରେ କାତର ହୋଇ ବିଳାପ କରି କରି ସର୍ବତ୍ର ଶାବକମାନଙ୍କ ଅନୁସନ୍ଧାନ ଆରମ୍ଭ କଲେ । ବିଡ଼ାଳ ଏହା ଜାଣିପାରି ବୃକ୍ଷକୋଟରରୁ ଗୋପନରେ ବହିର୍ଗତ ହୋଇ ପଳାୟନ କଲା । ପରେ ପକ୍ଷିଗଣ ଅନ୍ୱେଷଣ କରୁଁ କରୁଁ ଯେଉଁ କୋଟରରେ ବୃଦ୍ଧ ଗୃଧ୍ର ବାସ କରୁଥାଏ, ସେହି କୋଟରରେ ସେମାନଙ୍କ ଶାବକମାନଙ୍କର ଅସ୍ଥି ଦେଖିବାକୁ ପାଇଲେ । ତାହା ଦେଖି ସେମାନେ ସ୍ଥିର କଲେ ଯେ, ବୃଦ୍ଧ ଜରଦ୍‌ଗବହିଁ ଶାବକ-

ମାନଙ୍କୁ ବଧ କରି ଭକ୍ଷଣ କରିଅଛୁ । ସୁତରାଂ ସେମାନେ ସମସ୍ତେ ମିଶି ଜରଦ୍‌ଗବର ପ୍ରାଣ ସଂହାର କଲେ ।

ଏହି କାରଣରୁହିଁ ମୁଁ ତୁମ୍ଭଙ୍କୁ ଅଜ୍ଞାତ ଅପରିଚିତମାନଙ୍କ ସମ୍ବନ୍ଧରେ ସତର୍କ କରାଉଅଛୁ ।

ଶୃଗାଳ ଏହା ଶୁଣି କ୍ରୋଧରେ କହିଲା, 'ମହାଶୟ, ମୃଗ ସହିତ ଆପଣଙ୍କର ଯେଉଁ ଦିନ ପ୍ରଥମ ସାକ୍ଷାତ ହେଲା, ସେହି ଦିନ ଆପଣ ମଧ୍ୟ ତ ତାହାଙ୍କ ନିକଟରେ ଅଜ୍ଞାତକୁଳଶୀଳ ଥିଲେ— ତେବେ ତାହାଙ୍କ ସହିତ କିପରି ଆପଣଙ୍କ ପ୍ରଣୟ ଜନ୍ମିଅଛି ପୁଣି ତାହା ଦିନକୁ ଦିନ ବୃଦ୍ଧି ପାଉଅଛି ? ଅଥବା ଯେଉଁଠାରେ ପଣ୍ଡିତ ନାହାନ୍ତି ସେଠାରେ ଅଳ୍ପବୁଦ୍ଧିବିଶିଷ୍ଟ ଲୋକ ମଧ୍ୟ ପ୍ରଶଂସା ପାଇଥାଏ । ଯେଉଁ ଦେଶରେ କୌଣସି ବୃକ୍ଷ ନାହିଁ, ଏରଣ୍ଡ ହିଁ ସେଠାରେ ବୃକ୍ଷ ବୋଲି ଗଣ୍ୟ ହୋଇଥାଏ । ଏ ଆତ୍ମୀୟ, ଏ ପର, କ୍ଷୁଦ୍ରାଶୟ ଲୋକମାନେ ହିଁ ଏପରି ମନେ କରିଥାନ୍ତି । କିନ୍ତୁ ଉଦାରମନା ମହାପୁରୁଷମାନଙ୍କ ଦୃଷ୍ଟିରେ ପୃଥିବୀର ସକଳ ଲୋକ ଆତ୍ମୀୟ । ଏହି ମୋର ମୃଗ ଯେପରି ବନ୍ଧୁ, ଆପଣ ମଧ୍ୟ ମୋର ସେହିପରି ବନ୍ଧୁ ।'

ମୃଗ ହଠାତ୍ ମଧ୍ୟରେ ବାଧା ଦେଇ କହିଲା, "ଏପରି ଉତ୍ତର ପ୍ରତ୍ୟୁତ୍ତରର ପ୍ରୟୋଜନ ନାହିଁ । ଆସ, ଆମ୍ଭେମାନେ ସମସ୍ତେ ବନ୍ଧୁଭାବରେ ଓ ସୁଖରେ ଏକତ୍ର ବାସ କରିବା । କେହି କାହାର ହେଲେ ମିତ୍ର ବା ଶତ୍ରୁ ହୋଇ ଜନ୍ମଗ୍ରହଣ କରେ ନାହିଁ; ବ୍ୟବହାରଦ୍ୱାରା ହିଁ ଲୋକ ମିତ୍ର ବା ଶତ୍ରୁ ହୋଇଥାଏ । ସୁବୁଦ୍ଧି

---

ସହଜରେ କିନ୍ତୁ ତାର ହୁଏ ଅଧୋଗତି ।

କହିଲା—ଅତି ଉତ୍ତମ କଥା, ତେବେ ତୁମ୍ଭର ଯେପରି ଅଭିରୁଚି ସେହିପରି କର ।

ଅନନ୍ତର ପ୍ରାତଃକାଳରେ ସମସ୍ତେ ଯଥାଭିଳଷିତ ସ୍ଥାନକୁ ପ୍ରସ୍ଥାନ କଲେ । ପ୍ରତ୍ୟେହ ସେମାନେ ନିଜ ନିଜ ଖାଦ୍ୟଦ୍ରବ୍ୟ ସଂଗ୍ରହ କରି ରାତ୍ରିକାଳରେ ସେହି ସ୍ଥାନକୁ ପ୍ରତ୍ୟାବୃତ୍ତ ହେଉଥାନ୍ତି । ଏକ ଦିନ ଜମ୍ବୁକ ନିର୍ଜନରେ ମୃଗକୁ କହିଲା, "ଦେଖ ଭାଇ ମୃଗ ! ଏହି ବନର ଏକ ସ୍ଥାନରେ ଗୋଟିଏ ମଧୁର ନବଜାତ ଶସ୍ୟପୂର୍ଣ୍ଣ କ୍ଷେତ୍ର ଅଛି । ଆସ, ମୁଁ ତୁମ୍ଭଙ୍କୁ ସଙ୍ଗେ ଧରି ଯାଇ ତାହା ଦେଖାଇବି ।"

ମୃଗ ତାହା ସହିତ ଯାଇ ସେହି କ୍ଷେତ୍ର ଦେଖିଲା । ତତ୍ପରେ ମୃଗ ପ୍ରତିଦିନ ସେଠାକୁ ଯାଇ ସେହି ହରିତ୍‌ବର୍ଣ୍ଣ ଶସ୍ୟ ଖାଉଥାଏ । ଏକ ଦିନ ସେହି କ୍ଷେତ୍ରର ଅଧିକାରୀ ମୃଗକୁ ଦେଖି ଏକ ଜାଲ ବିସ୍ତାର କଲା । ଅତଃପର ମୃଗ ଶସ୍ୟ ଲୋଭରେ ସେଠାକୁ ଯାଇ ପାଶବଦ୍ଧ ହେଲା । ଜାଲରୁ ମୁକ୍ତ ହେବା ନିମିତ୍ତ ବୃଥା ଚେଷ୍ଟା କରିବା ପରେ ଭାବିଲା, "ମୁଁ ଜାଲରେ ଦୃଢ଼ବଦ୍ଧ ହୋଇଅଛି; ଏତେବେଳେ ଯଦି ମିତ୍ର ଆସି ମୋତେ ଉଦ୍ଧାର କରିବାକୁ ନ ଆସନ୍ତି, ତାହାହେଲେ ମୋର ମରଣ ସୁନିଶ୍ଚିତ । ଇତ୍ୟବସରରେ ଶୃଗାଳ ସେଠାରେ ଉପସ୍ଥିତ ହୋଇ ଭାବିଲା—ମୋ ଦୁଷ୍ଟକଳ୍ପନା ସଫଳ ହୋଇଅଛି; ବର୍ତ୍ତମାନ ମୋର ମନୋରଥ ପୂର୍ଣ୍ଣ ହେବ । କାରଣ, ଏହି ମୃଗକୁ ଯେତେବେଳେ କାଟି ଖଣ୍ଡ ଖଣ୍ଡ କରିବେ, ସେତେବେଳେ ଏହାର ମାଂସ ଓ ରକ୍ତମିଶ୍ରିତ ଅସ୍ଥିସକଳ ମୁଁ ଅବଶ୍ୟ ପାଇବି—ତଦ୍ଦ୍ୱାରା ମୋର ଉତ୍ତମ ଆହାର ଚଳିବ ।"

---

ନ ରହେ ବିଦ୍ୟାର ଫଳ ରହିଲେ ବ୍ୟସନ,

ମୃଗ ଶୃଗାଳକୁ ଦେଖି ଆନନ୍ଦରେ କହିଲା, 'ସଖେ ! ଶୀଘ୍ର ମୋତେ ବନ୍ଧନମୁକ୍ତ କର । ଦେଖ, ଉତ୍ସବକାଳରେ, ବିପଦ୍ ସମୟରେ, ଦୁର୍ଭିକ୍ଷସମୟରେ, ରାଷ୍ଟ୍ରବିପ୍ଲବରେ, ରାଜଦ୍ୱାରରେ ଏବଂ ଶ୍ମଶାନରେ ଯେ ସାହାଯ୍ୟ କରେ, ସେ ପ୍ରକୃତ ବନ୍ଧୁ, ପୁଣି ଆପତ୍କାଳରେ ମିତ୍ରର, ଯୁଦ୍ଧ ସମୟରେ ବୀରର, ଋଣପରିଶୋଧ ସମୟରେ ସାଧୁଲୋକର ଏବଂ ଧନକ୍ଷୟ ହେଲେ ଭାର୍ଯ୍ୟାର ପ୍ରକୃତ ପରିଚୟ ମିଳେ ।'

ଶୃଗାଳ ପାଶ ପ୍ରତି ବାରମ୍ବାର ଦୃଷ୍ଟିପାତ କରି ଭାବିଲା, ଏହି ପାଶଟି ଅତ୍ୟନ୍ତ କଠିନ, ସୁତରାଂ ମୃଗ ଏହା ନିଜେ ଛେଦନ କରି ପଳାଇ ନ ପାରେ । ଅନନ୍ତର ଚକ୍ରକୋଣ୍ୟଭାବରେ କହିଲା, 'ମିତ୍ର ! ଦେଖ; ଏହି ସମସ୍ତ ରଜ୍ଜୁ ସ୍ନାୟୁନିର୍ମିତ, ପୁଣି ଆଜି ରବିବାର; ଅତଏବ ମୁଁ କିପରି ଆଜି ଏହା ଦନ୍ତରେ ସ୍ପର୍ଶ କରିବି ? ସଖେ, ତୁମ୍ଭେ ଅନ୍ୟପ୍ରକାର ଭାବ ନାହିଁ, କାଲି ପ୍ରଭାତରେ ତୁମ୍ଭେ ଯାହା କହିବ ମୁଁ ଅବଶ୍ୟ ତାହା କରିବି ।'

ସେ ଦିନ ସନ୍ଧ୍ୟା ସମୟରେ ସେହି କାକ ବାସସ୍ଥାନରେ ମୃଗକୁ ଦେଖି ନପାଇ ଇତସ୍ତତଃ ତାହାର ଅନ୍ୱେଷଣ କଲା, ପୁଣି ପରିଶେଷରେ ମୃଗର ଦୁରବସ୍ଥା ଦେଖି କହିଲା—"ସଖେ ! ଏ କଣ ?"

ମୃଗ—ଏହା ମିତ୍ରର ଉପଦେଶ ନ ମାନିବାର ଫଳ । କଥିତ ଅଛି—ଯେ ହିତୈଷୀ ବନ୍ଧୁର କଥା ନ ଶୁଣେ, ସେ ପଦେ ପଦେ ବିପଦରେ ପଡ଼ି ଶତ୍ରୁର ଆନନ୍ଦ ବର୍ଦ୍ଧନ କରିଥାଏ ।

କାକ—ସେହି ବଞ୍ଚକ କେଉଁଠାରେ ଅଛି ?

---

ରହେ ନାହିଁ କିଛି ସୁଖ ହୋଇଲେ କୃପଣ ।

ମୃଗ—ସେ ମୋର ମାଂସ ଖାଇବା ଅଭିପ୍ରାୟରେ ଏହି ସ୍ଥାନରେହିଁ ଅଛି ।

କାକ—ମୁଁ ତ ତୁମ୍ଭଙ୍କୁ ଏହା ପ୍ରଥମରେ କହିଥିଲି । ଖଳଠାରେ ଗୁଣବାନ୍ ନିରପରାଧ ଲୋକର ମଧ୍ୟ ଭୟ ରହେ । ମରଣକାଳ ନିକଟବର୍ତ୍ତୀ ହେଲେ ମନୁଷ୍ୟ ପକ୍ଷରେ ଅରୁନ୍ଧତୀ ନକ୍ଷତ୍ରଦର୍ଶନ, ଦୀପନିର୍ବାଣ ଗନ୍ଧ ଆଘ୍ରାଣ, ପୁଣି ମିତ୍ରର ହିତୋପଦେଶ ପାଳନ ନିତାନ୍ତ ଅସମ୍ଭବ ହୁଏ ।

"ସାକ୍ଷାତରେ ରହି ମୁଖେ କହେ ପ୍ରିୟଭାଷ,
ଅସାକ୍ଷାତେ ରହି ଯେହୁ କରେ ସର୍ବନାଶ;
ତ୍ୟଜିବ ସେରୂପ ବନ୍ଧୁ କରିଣ ଯତନ,
ମୁଖେ ମଧୁ ବିଷେ ଭରା କୁମ୍ଭକୁ ଯେସନ ।"

ଅନନ୍ତର, କାକ ଦୀର୍ଘନିଶ୍ୱାସ ଛାଡ଼ି କହିଲା—"ରେ ପାପିଷ୍ଠ ବିଶ୍ୱାସଘାତକତା ଶୃଗାଳ ! ତୁ କି ଦୁଷ୍କର୍ମ କରିଅଛୁ ! ଯେ ବନ୍ଧୁକୁ ମଧୁର ବାକ୍ୟରେ ମୋହିତ, କପଟ ସେବାରେ ବଶୀଭୂତ, ଆଶାନ୍ୱିତ ଓ ବିଶ୍ୱସ୍ତଚିତ୍ତ କରି ପ୍ରତାରଣା କରେ, ସେ ମହାପାପୀ । ମା ବସୁମତି ! ଉପକାରୀ, ବିଶ୍ୱସ୍ତ, ସରଳହୃଦୟ, ନିଷ୍ପାପବନ୍ଧୁ ପ୍ରତି ପାପାଚରଣ କରିବା କୃତଘ୍ନ ପାପିଷ୍ଠଙ୍କୁ କି ହେତୁ ବହିଅଛ ? ଦୁର୍ଜନ ବ୍ୟକ୍ତି ସହିତ ବନ୍ଧୁତ୍ୱ, ଏପରି କି ଆଳାପ ସୁଦ୍ଧା କରିବା ଅନୁଚିତ । କାରଣ, ଅଙ୍ଗାର ଜ୍ୱଳନ୍ତ ଅବସ୍ଥାରେ ହସ୍ତକୁ ଦଗ୍ଧ କରେ ଏବଂ ଶୀତଳ ଅବସ୍ଥାରେ ତାହାକୁ କୃଷ୍ଣବର୍ଣ୍ଣ କରେ । ଅଥବା ଦୁର୍ଜନମାନଙ୍କର ପ୍ରକୃତିହିଁ ଏହିପରି । ମଶକ ଦୁର୍ଜନର ସମସ୍ତକାର୍ଯ୍ୟର ଅନୁକରଣ କରିଥାଏ, ଦେଖ, ସେ ପ୍ରଥମରେ

---

ଆତ୍ମ-ବଳ ପର-ବଳ ନ ବୁଝେ ଯେ ଜନ,

ପାଦରେ ବସେ, ପରେ ପୃଷ୍ଠରେ ବସି ରକ୍ତ ପାନକରେ, କର୍ଣ୍ଣ ନିକଟରେ ଏକପ୍ରକାର ବିଚିତ୍ର ଶବ୍ଦ କରେ, ଶେଷରେ ସୁଯୋଗ ପାଇଲେ ନିର୍ଭୟରେ ଅଭ୍ୟନ୍ତରରେ ପ୍ରବେଶ କରେ । ଦୁର୍ଜ୍ଜନବ୍ୟକ୍ତି ମିଷ୍ଟ କଥା କହିଲେହେଁ ତାହାକୁ ବିଶ୍ୱାସ କରିବା ଅନୁଚିତ, କାରଣ ତାହାର ଜିହ୍ୱାଗ୍ରରେ ମଧୁ ଓ ହୃଦୟରେ ବିଷମ ହାଳାହଳ ଥାଏ ।"

ଅନନ୍ତର କାକ ପ୍ରଭାତରେ ସେହି କ୍ଷେତ୍ରସ୍ୱାମିକୁ ଯଷ୍ଟିହସ୍ତରେ ସେହି ସ୍ଥାନକୁ ଆସିବାର ଦେଖିଲା । ତାହାକୁ ଦେଖି କହିଲା— "ସଖେ ମୃଗ ! ଏବେ ତୁମ୍ଭେ ଆପଣାକୁ ଠିକ୍ ମୃତବତ୍ ଦେଖାଇବାକୁ ଚେଷ୍ଟାକର । ନିଶ୍ୱାସ ରୁନ୍ଧ ପେଟ ଫୁଲାଇ ପାଦ ସ୍ଥିରକରି ନିଶ୍ଚଳଭାବରେ ପଡ଼ିରହ, ମୁଁ ଚଞ୍ଚୁଦ୍ୱାରା ତୁମ୍ଭ ଚକ୍ଷୁ ଖୁମ୍ପିବାର ଛଳ କରିବି । ପରେ ମୁଁ ରବ କରିବା କ୍ଷଣି ତୁମ୍ଭେ ଉଠି ଶୀଘ୍ର ପଳାୟନ କରିବ ।" ମୃଗ କାକର କଥାନୁସାରେ ସେହିପରି ପଡ଼ିରହିଲା । କ୍ଷେତ୍ରପତି ମୃଗକୁ ସେହି ଅବସ୍ଥାରେ ଦେଖି ଅତ୍ୟନ୍ତ ଆନନ୍ଦରେ କହିଲା, 'ବାଃ, ନିଜେ ମରିଅଛି ।' ଏହା କହି ମୃଗକୁ ବନ୍ଧନରୁ ମୁକ୍ତକରି ଜାଲଟି ଭୂମିରୁ ଗୋଟାଇ ରଖିଲା । ତା ପରେ ମୃଗ କାକର ରବ ଶୁଣି ସତ୍ୱର ଉଠି ପଳାୟନକଲା । କ୍ଷେତ୍ରସ୍ୱାମୀ ମୃଗକୁ ଲକ୍ଷ୍ୟକରି କ୍ରୋଧରେ ଯଷ୍ଟି ନିକ୍ଷେପକଲା । ଯଷ୍ଟିଟି ସେଠାରେ ଲୁଚିରହିଥିବା ଶୃଗାଳ ଉପରେ ପଡ଼ିବାରୁ ସେ ପ୍ରାଣତ୍ୟାଗ କଲା ।

"ଯେ ଅତ୍ୟୁତ୍କଟ ପାପ ବା ଅତ୍ୟଧିକ ପୁଣ୍ୟ କରେ, ସେ ଇହଲୋକରେ ତିନିବର୍ଷ ବା ତିନିମାସ ବା ତିନିପକ୍ଷ ବା ତିନିଦିନ

---

ମଧ୍ୟରେ ତାହାର ଫଳ ଭୋଗ କରିଥାଏ । ଭକ୍ଷ୍ୟ-ଭକ୍ଷକର ପ୍ରୀତି ଅନର୍ଥର ମୂଳ—ସେହି କାରଣରୁ ମୁଁ ତୁମ୍ଭଙ୍କୁ ଏହି ସକଳ କଥା କହୁଅଛି ।"

ଲଘୁପତନକ ପୁନରାୟ କହିଲା—'ତୁମ୍ଭଙ୍କୁ ଭକ୍ଷଣ କଲେ ସୁଦ୍ଧା ମୋର ଉଦର ପୂର୍ଣ୍ଣ ହେବ ନାହିଁ; କିନ୍ତୁ ତୁମ୍ଭେ ଜୀବିତ ଥିଲେ ମୁଁ ଚିତ୍ରଗ୍ରୀବ ପରି ସୁଖରେ ଜୀବନଯାପନ କରି ପାରିବି ।' ହିରଣ୍ୟକ କହିଲା, 'ତୁମ୍ଭେ ଚଞ୍ଚଳପ୍ରକୃତି । ଚପଳ ସହିତ ପ୍ରଣୟ କରିବା ଅନୁଚିତ । କଥିତ ଅଛି—ମାର୍ଜାର, ମହିଷ, କାକ ପୁଣି ଖଳପ୍ରକୃତି ଲୋକ—ଏମାନଙ୍କୁ ବିଶ୍ୱାସ କଲେ ଅମଙ୍ଗଳ ଘଟେ । ପୁଣି ତୁମ୍ଭେ ଆମ୍ଭମାନଙ୍କର ଶତ୍ରୁ ପକ୍ଷ । ସହଜ ଶତ୍ରୁ ସହିତ ସୁଦୃଢ଼ ସନ୍ଧି ସୁଦ୍ଧା କରିବା ଅନୁଚିତ । ଜଳ (ଅଗ୍ନି ସଂଯୋଗରେ) ସୁତପ୍ତ ହେଲେ ମଧ୍ୟ ଅଗ୍ନିକୁ ନିର୍ବାପିତ କରିଥାଏ । ଦୁର୍ବୃତ୍ତ ଲୋକ ବିଦ୍ୟାରେ ଭୂଷିତ ହେଲେ ମଧ୍ୟ ତାହାର ସଙ୍ଗ ପରିହାର କରିବା କର୍ତ୍ତବ୍ୟ । ସର୍ପ ମଣିରେ ଶୋଭା ପାଇଲେ ସୁଦ୍ଧା ତାହା କଣ ଭୟଙ୍କର ନୁହେ ? ବିଶେଷ ପ୍ରୟୋଜନ ଥିଲେହେଁ ଶତ୍ରୁ ଓ ଦୁଷ୍ଟା ଭାର୍ଯ୍ୟାଠାରେ ବିଶ୍ୱାସ ସ୍ଥାପନ କରିବା ଉଚିତ ନୁହେ । ଏମାନଙ୍କୁ ବିଶ୍ୱାସ କଲେ ଯେ ଜୀବନ ବିନଷ୍ଟ ହେବ ଏଥିରେ ସନ୍ଦେହ ନାହିଁ ।'

ଲଘୁପତନକ କହିଲା—"ମୁଁ ସବୁ ଶୁଣିଲି ତଥାପି ତୁମ୍ଭ ସହିତ ବନ୍ଧୁତା କରିବାକୁ ମୁଁ ସଙ୍କଳ୍ପବଦ୍ଧ ହୋଇଅଛି । କୃତକାର୍ଯ୍ୟ ନ ହେଲେ ତୁମ୍ଭ ଦ୍ୱାରରେ ଅନାହାରରେ ଜୀବନ ତ୍ୟାଗ କରିବି । ଦେଖ, ଯେପରି ମୃଣ୍ମୟ ପାତ୍ର ସ୍ୱଳ୍ପ ଆଘାତରେ ଭାଙ୍ଗିଯାଏ ଏବଂ

---

ଦୁର୍ଜନ ଆପଣା ଦୋଷେ ମନ୍ଦ କର୍ମ କରେ,

ଭାଙ୍ଗି ଗଲେ ଆଉ ଯୋଡ଼ ହୁଏ ନାହିଁ, ସେପରି ଦୁର୍ଜ୍ଜନ ସହିତ ପ୍ରଣୟ ସାମାନ୍ୟ କାରଣରୁ ମଧ୍ୟ ବିଚ୍ଛିନ୍ନ ହୁଏ ଏବଂ ଥରେ ବିଚ୍ଛିନ୍ନ ହେଲେ ପୁନର୍ମିଳନ ଅସମ୍ଭବ ହୋଇ ଉଠେ । କିନ୍ତୁ ସୁବର୍ଣ୍ଣପାତ୍ର ଯେପରି ସହଜରେ ଭାଙ୍ଗେ ନାହିଁ ଏବଂ ଦୈବାତ୍ ଭାଙ୍ଗିଗଲେ ମଧ୍ୟ ସହଜରେ ଯୋଡ଼ ହୋଇଯାଏ, ସୁଜନ ସଙ୍ଗରେ ବନ୍ଧୁତ୍ୱ ମଧ୍ୟ ସେହିପରି । କାରଣ, ସେ ବନ୍ଧୁତା ସାମାନ୍ୟ କାରଣରୁ ବିଚ୍ଛିନ୍ନ ହେବାର ନୁହେ ଏବଂ ଦୈବଦୁର୍ବିପାକରେ ବିଚ୍ଛେଦ ଘଟିଲେ ସୁଦ୍ଧା ପୁନର୍ମିଳନ ସ୍ୱଳ୍ପାୟାସରେ ହୋଇପାରେ । ସାଧୁଲୋକମାନେ ନାରିକେଳଫଳ ତୁଲ୍ୟ ଦୃଷ୍ଟ ହୁଅନ୍ତି—ସେମାନଙ୍କ ବାହାରରେ କାଠିନ୍ୟ ଓ ଅନ୍ତରରେ କୋମଳତା ଦେଖାଯାଏ, ଅସାଧୁ ବ୍ୟକ୍ତିମାନେ ବଦରୀଫଳ ପରି ବାହାରରେ ହିଁ ମନୋହର ଦେଖାଯାନ୍ତି । ପୁଣି ଦେଖ, ସାଧୁମାନଙ୍କ ପ୍ରଣୟ-ବିଚ୍ଛେଦ ଘଟିଲେ ହେଁ ସେମାନଙ୍କ ଗୁଣଗ୍ରାମ କେବେ ହେଲେ ବିକୃତ ହୁଏ ନାହିଁ; ଯେପରି ମୃଣାଳଦଣ୍ଡ ଛିନ୍ନ ହେଲେ ମଧ୍ୟ ତାହାର ମଧ୍ୟସ୍ଥିତ ସୂତ୍ରସକଳ ଅଚ୍ଛିନ୍ନ ଥାଏ । ସ୍ନେହଶୀଳତା, ଅକପଟତା, ଦାନଶୀଳତା, ଉଦାରତା, ସତ୍ୟନିଷ୍ଠା, ସୁଖଦୁଃଖରେ ସମଭାବ ଓ ସୌର୍ଯ୍ୟ ଏ ସକଳ ଗୁଣ ଯାହାର ଥାଏ, ସେ ବନ୍ଧୁତାର ଉପଯୁକ୍ତ ପାତ୍ର । ତୁମ୍ଭ ଭିନ୍ନ ଏହି ସକଳଗୁଣରେ ବିଭୂଷିତ ଅନ୍ୟ ମିତ୍ର ମୁଁ ଆଉ କେଉଁଠାରେ ପାଇବି ?”

ଏହି କଥା ଶୁଣି ହିରଣ୍ୟକ ବିବରରୁ ବହିର୍ଗତ ହୋଇ କହିଲା—“ତୁମ୍ଭର ଏହି ଅମୃତମୟ ବାକ୍ୟ ଶୁଣି ମୁଁ ପରମ ଆପ୍ୟାୟିତ ହେଲି । କଥା ଅଛି—ନିଷ୍ଠୁରତା, ଅବ୍ୟବସ୍ଥିତଚିତ୍ତତା;

---

ଫଳିତାର ଫଳେ ଯାର ସାଧୁର ଉପରେ ।

ରହସ୍ୟ ପ୍ରକାଶ, ଯାଚଞ୍ଚା, କ୍ରୋଧ, ଦ୍ୟୂତକ୍ରୀଡ଼ାସକ୍ତି ଓ ମିଥ୍ୟାବାଦିତା ଏହି ସକଳ ମିତ୍ରର ଦୋଷାବହ । ଏହି ଦୋଷ-ସମୂହରୁ ଗୋଟିଏ ସୁଦ୍ଧା ତୁମଠାରେ ଦେଖୁନାହିଁ । ଅତଏବ ତୁମ୍ଭେ ଯାହା ଇଚ୍ଛା କରୁଅଛ ତାହା ହିଁ ହେଉ ।"

ଏହା କହି ହିରଣ୍ୟକ ମୈତ୍ରୀସ୍ଥାପନପୂର୍ବକ ଉତ୍ତମ ଖାଦ୍ୟ-ସାମଗ୍ରୀଦ୍ୱାରା ଲଘୁପତନକଙ୍କୁ ପରିତୁଷ୍ଟ କରି ସ୍ୱୀୟ ବିବରରେ ପ୍ରବିଷ୍ଟ ହେଲା । ଲଘୁପତନକ ମଧ୍ୟ ସ୍ୱସ୍ଥାନକୁ ପ୍ରସ୍ଥାନ କଲା । ସେହି ଦିନଠାରୁ ସେ ଦୁଇଜଣ ପରମ ବନ୍ଧୁଭାବରେ କିଛିକାଳ ଅତିବାହନ କଲେ ।

ଏକଦିନ ଲଘୁପତନକ ହିରଣ୍ୟକକୁ କହିଲା, "ସଖେ ! ଏହି ସ୍ଥାନରେ ଆହାର-ସାମଗ୍ରୀ ଅତ୍ୟନ୍ତ କଷ୍ଟରେ ମିଳେ । ଅତଏବ ଏହି ସ୍ଥାନ ତ୍ୟାଗକରି ଅନ୍ୟତ୍ର ଯିବାକୁ ଇଚ୍ଛାକରେ ।"

ହିରଣ୍ୟକ—ମିତ୍ର ! କେଉଁଠାକୁ ଯିବ ? କଥିତ ଅଛି ଯେ, ବୁଦ୍ଧିମାନ୍ ବ୍ୟକ୍ତି ଏକ ପାଦରେ ଗମନ, ଅନ୍ୟ ପାଦରେ ଅବସ୍ଥାନ କରେ । ଅନ୍ୟ ସ୍ଥାନ ନ ଦେଖି ପୂର୍ବସ୍ଥାନ ତ୍ୟାଗକରିବା ଅନୁଚିତ ।

କାକ—ଗୋଟିଏ ଉତ୍ତମ ସ୍ଥାନ ଅଛି ।

ହିରଣ୍ୟକ—ସେ ସ୍ଥାନ କେଉଁଠାରେ ?

କାକ—ଦଣ୍ଡକାରଣ୍ୟରେ କର୍ପୂରଗୌର ନାମରେ ଏକ ସରୋବର ଅଛି । ସେଠାରେ ମୋର ବହୁକାଳର ପ୍ରିୟବନ୍ଧୁ ମନ୍ଥର

---

ଯେଉଁ କାର୍ଯ୍ୟେ ବିଚକ୍ଷଣ ହୁଏ ଯେଉଁ ଜନ,

ନାମକ ଏକ କଚ୍ଛପ ବାସ କରନ୍ତି । ସେ ସ୍ୱଭାବତଃ ଅତି ଧାର୍ମିକ । ପରକୁ ଉପଦେଶ ଦେବା ନିମିତ୍ତ ସମସ୍ତେ ସକଳ ସ୍ଥାନରେ ପାଣ୍ଡିତ୍ୟ ପ୍ରକାଶ କରିବାର ଦେଖାଯାଏ; କିନ୍ତୁ ନିଜେ ଧର୍ମଶୀଳ—ଏପରି ମହାପୁରୁଷ ଅତି ବିରଳ । ସେ ନାନା ପ୍ରକାର ଆହାର ସାମଗ୍ରୀ ଦ୍ୱାରା ମୋର ସମ୍ବର୍ଦ୍ଧନା କରିବେ ।

ହିରଣ୍ୟକ—ତେବେ ମୁଁ ବା ଏଠାରେ ରହି କଣ କରିବି ? ଯେଉଁ ସ୍ଥାନରେ ଜୀବିକାନିର୍ବାହର ଉପାୟ ନାହିଁ, ଗୁଣର ଗୌରବ ନାହିଁ, ବିଦ୍ୟା ଉପାର୍ଜ୍ଜନ କରିବାର ପଥ ନାହିଁ, ପୁଣି ଯେଉଁ ସ୍ଥାନରେ ବନ୍ଧୁବାନ୍ଧବ ନାହାନ୍ତି ସେହି ସ୍ଥାନ ପରିହାର କରିବା ବାଞ୍ଛନୀୟ । ପୁଣି ରାଜା, ଧନୀ, ବୈଦ୍ୟ, ଶ୍ରୋତ୍ରିୟ ବ୍ରାହ୍ମଣ ଓ ନଦୀ ନ ଥିବା ଦେଶରେ ବାସ କରିବା ଏକାନ୍ତ ଅନୁଚିତ । ଯେଉଁ ସ୍ଥାନରେ ରାଜଦଣ୍ଡର ଭୟ ନାହିଁ, ଯେଉଁ ସ୍ଥାନରେ ଦୁଷ୍କର୍ମ କରି ଲୋକେ ଲଜ୍ଜାନୁଭବ କରନ୍ତି ନାହିଁ, ପୁଣି ଯେଉଁ ସ୍ଥାନରେ ପରହିତୈଷିତା, ସରଳତା ଓ ବଦାନ୍ୟତା ନାହିଁ, ସେହି ସ୍ଥାନରେ ବାସ କରିବା ଉଚିତ ନୁହେ । ଅତଏବ ମୋତେ ମଧ୍ୟ ସେଠାକୁ ନିଅ ।

କାକ—ତେବେ ତୁମ୍ଭେ ମଧ୍ୟ ଚାଲ ।

---

## ତୃତୀୟ କଥା

ଅନନ୍ତର ଲଘୁପତନକ ହିରଣ୍ୟକ ସହିତ ସରୋବର ନିକଟକୁ ଗମନ କଲା । ମନ୍ଥର ଦୂରରୁ ଲଘୁପତନକୁ ଆସିବାର

---

କରିବ ତାହାକୁ ସେହି କାର୍ଯ୍ୟେ ନିଯୋଜନ ।

ଦେଖି ଜଳରୁ ସ୍ଥଳକୁ ଆସିଲା ପୁଣି ତାହାର ଓ ହିରଣ୍ୟକର ଯଥୋଚିତ ଆତିଥ୍ୟ କଲା । କାରଣ—ଅତିଥି ବାଳକ ହେଉ, ଯୁବକ ହେଉ କିମ୍ବା ବୃଦ୍ଧ ହେଉ, ତାହାର ଉପଯୁକ୍ତ ସମ୍ମାନ କରିବା କର୍ତ୍ତବ୍ୟ—ଯେହେତୁ ସେ ସକଳ ଆଶ୍ରମିଙ୍କ ଗୁରୁ, ଅଗ୍ନି ଦ୍ୱିଜାତିମାନଙ୍କ ଗୁରୁ, ବ୍ରାହ୍ମଣ ବର୍ଣ୍ଣଚତୁଷ୍ଟୟଙ୍କ ଗୁରୁ, ସ୍ୱାମୀ ସ୍ତ୍ରୀର ଏକମାତ୍ର ଗୁରୁ, ପୁଣି ଅତିଥି ସମସ୍ତଙ୍କର ଗୁରୁ ।

କାକ—'ସଖେ ମନ୍ଥର ! ଏହାଙ୍କୁ ବିଶେଷରୂପେ ସମ୍ମାନ କର, ଏହି ମହାତ୍ମା ପୁଣ୍ୟକର୍ମାମାନଙ୍କର ଅଗ୍ରଗଣ୍ୟ, ଦୟାର ସାଗର ହିରଣ୍ୟକ ନାମକ ମୂଷିକରାଜ । ସର୍ପରାଜ ବାସୁକି ସହସ୍ର ଜିହ୍ୱାରେ ଏହାଙ୍କର ଗୁଣବର୍ଣ୍ଣନା କରିବାକୁ ସକ୍ଷମ ହେବେ କି ନା ସନ୍ଦେହ ।' ଏହା କହି ଚିତ୍ରଗ୍ରୀବର ଉପାଖ୍ୟାନଟି ଆଦ୍ୟୋପାନ୍ତ ବର୍ଣ୍ଣନ କଲା । ଅନନ୍ତରଂ ମନ୍ଥର ସାଦରେ ହିରଣ୍ୟକର ଅଭ୍ୟର୍ଥନା କରି କହିଲା—ମହାଶୟ, ଆପଣ ଏହି ନିର୍ଜ୍ଜନ ବନକୁ କି ହେତୁ ଆସିଅଛନ୍ତି, ତାହା ଦୟାପୂର୍ବକ କହନ୍ତୁ ।

ହିରଣ୍ୟକ—କହୁଅଛି ଶୁଣନ୍ତୁ ।

---

## ହିରଣ୍ୟକ

ଚମ୍ପକ ନାମରେ ନଗରରେ ସନ୍ନ୍ୟାସିମାନଙ୍କର ଏକ ଆଶ୍ରମ ଅଛି । ସେଠାରେ ଚୂଡ଼ାକର୍ଣ୍ଣ ନାମରେ ଜଣେ ପରିବ୍ରାଜକ ବାସ କରୁଥାନ୍ତି । ସେ ତାହାଙ୍କର ଭୋଜନାବଶିଷ୍ଟ ଭିକ୍ଷାନ୍ନ ଭିକ୍ଷାପାତ୍ରରେ ପୂର୍ଣ୍ଣ କରି ଉକ୍ତ ପାତ୍ରଟି ନାଗଦନ୍ତ ଉପରେ ରଖି ନିଦ୍ରା ଯାଉଥାନ୍ତି ।

---

ଉପକାରୀ ଶତ୍ରୁ ସଙ୍ଗେ କରିବ ମିଳନ,

ମୁଁ ପ୍ରତିଦିନ ସେହି ଦଣ୍ଡ ଉପରକୁ ଉଠି ସେହି ଅନ୍ନ ଖାଉଥାଏ । ଏକଦିନ ତାହାଙ୍କର ପ୍ରିୟବନ୍ଧୁ ପରିବ୍ରାଜକ ବୀଣାକର୍ଣ୍ଣ ସେଠାକୁ ଆସିଲେ । ଚୂଡ଼ାକର୍ଣ୍ଣ ତାହାଙ୍କ ସହିତ କଥାପ୍ରସଙ୍ଗରେ ଆସକ୍ତ ରହି ମୋତେ ଭୟ ଦେଖାଇବା ନିମିତ୍ତ ଜୀର୍ଣ୍ଣ ବଂଶଖଣ୍ଡଦ୍ୱାରା ଭୂମିରେ ଆଘାତ କରିବାକୁ ଲାଗିଲେ ।

ବୀଣାକର୍ଣ୍ଣ—ସଖେ ! ତୁମ୍ଭେ ମୋ କଥାରେ ବିରକ୍ତ ହୋଇ ଅନ୍ୟ-ମନସ୍କ ହୋଇଅଛ କି ହେତୁ ? ପ୍ରଫୁଲ୍ଲବଦନ, ପ୍ରସନ୍ନନୟନ, ବାକ୍ୟାଳାପରେ ଆଗ୍ରହ, ମଧୁରବଚନ, ସମଧିକ ସ୍ନେହ ଓ ସସମ୍ଭ୍ରମ ଦର୍ଶନ—ଏହି ସକଳ ଅନୁରକ୍ତ ବ୍ୟକ୍ତିର ଲକ୍ଷଣ । ବିରକ୍ତିଭାବାପନ୍ନ ମନୁଷ୍ୟର ଲକ୍ଷଣ ହେଉଛି—ଅସମ୍ମାନ ପ୍ରଦର୍ଶନ, ଦୋଷର କୀର୍ତ୍ତନ, ସାକ୍ଷାତ୍ କରିବାକୁ ଅନିଚ୍ଛା, ଅସନ୍ତୋଷ ସହିତ ଦାନ, ପୂର୍ବୋପକାରର ବିସ୍ମରଣ ପୁଣି କଥୋପକଥନ କାଳରେ ନାମର ବିସ୍ମରଣ ।

ଚୂଡ଼ାକର୍ଣ୍ଣ—ସଖେ ! ମୁଁ ବିରକ୍ତ ହୋଇ ନାହିଁ । କିନ୍ତୁ ଦେଖ, ଏହି ମୂଷିକ ମୋର ବଡ଼ ଅନିଷ୍ଟକାରୀ—ସର୍ବଦା ଉପରକୁ ଡେଇଁ ଯାଇ ମୋ ପାତ୍ରସ୍ଥିତ ଭିକ୍ଷାନ୍ନ ଭକ୍ଷଣ କରେ ।

ବୀଣାକର୍ଣ୍ଣ ନାଗଦନ୍ତଟି ଦେଖି କହିଲେ—'ମୂଷିକ ଦୁର୍ବଳ ପ୍ରାଣୀ ହେଲେହେଁ କିପରି ଏତେ ଉପରକୁ ଡେଇଁ ଉଠେ । ଅତଏବ ଏଥିରେ କୌଣସି କାରଣ ଥିବ ।' ପରିବ୍ରାଜକ କ୍ଷଣକାଳ ଚିନ୍ତା କରି କହିଲେ, 'ବୋଧହୁଏ ଅର୍ଥବାହୁଲ୍ୟ ଏହାର କାରଣ । କାରଣ—ଧନବାନ୍ ବ୍ୟକ୍ତିମାନେ ସକଳ ସମୟରେ ଓ ସକଳ ସ୍ଥାନରେ ବଳବାନ୍ ହୁଅନ୍ତି, ରାଜାମାନଙ୍କ ପ୍ରଭୁତ୍ୱର ମୂଳ ହେଉଅଛି ଧନ ।'

---

ଅପକାରୀ ମିତ୍ର ନିଶ୍ଚେ କରିବ ବର୍ଜନ ।

ଅନନ୍ତର ସେହି ପରିବ୍ରାଜକ ଖନିତ୍ରରେ ମୋର ଗର୍ତ୍ତ ଖନନ କରି ମୋର ଚିରସଞ୍ଚିତ ସମସ୍ତ ଧନ ଗ୍ରହଣ କଲେ । ଦିନକୁ ଦିନ ମୋ ଶରୀରର ବଳ କ୍ଷୟ ହେବାକୁ ଲାଗିଲା, ମନରେ ବଳ, ଓ ଉତ୍ସାହ ରହିଲା ନାହିଁ, ଏପରି କି ନିଜର ଆହାର ପର୍ଯ୍ୟନ୍ତ ସଂଗ୍ରହ କରିବାକୁ ଅକ୍ଷମ ହେଲି । ମୁଁ ଏକଦିନ ଏହି ଅବସ୍ଥାରେ ସଭୟେ ଧୀରେ ଧୀରେ ଯାଉଅଛି, ଏପରି ସମୟରେ ଚୂଡ଼ାକର୍ଣ୍ଣ ମୋତେ ଦେଖି କହିଲେ,—'ସମସ୍ତେ ଧନର ପ୍ରଭାବରେ ବଳବାନ୍ ହୁଅନ୍ତି ପୁଣି ପଣ୍ଡିତ ରୂପେ ଗଣ୍ୟ ହୁଅନ୍ତି । ଦେଖ—ଦୁଷ୍ଟ ମୂଷିକ ଧନ ନାଶ ହେବାରୁ ସ୍ୱଜାତି ସଦୃଶ ଦୁର୍ବଳ ହୋଇଅଛି । ଅର୍ଥହୀନ ହେଲେ ମନୁଷ୍ୟ ନିଜର ବୁଦ୍ଧି ହରାଏ । ଗ୍ରୀଷ୍ମକାଳରେ କ୍ଷୁଦ୍ର ନଦୀର ଜଳ ଯେପରି ଶୁଖିଯାଏ, ସେପରି ଧନହୀନ ବ୍ୟକ୍ତିର ସକଳ କ୍ରିୟା ବିନଷ୍ଟ ହୁଏ । ପୁଣି ଦେଖ—ଯାହାର ଧନ ଅଛି, ତାହାରହିଁ ମିତ୍ର ଓ ବାନ୍ଧବ ଅଛନ୍ତି ଏବଂ ସେ ପୁରୁଷ ଓ ପଣ୍ଡିତ ପଦବାଚ୍ୟ ହୋଇଥାଏ । ପୁତ୍ରହୀନ ବ୍ୟକ୍ତିର ଗୃହ ଶୂନ୍ୟ, ମିତ୍ରହୀନ ବ୍ୟକ୍ତି ଓ ମୂର୍ଖର ହୃଦୟ ଶୂନ୍ୟ, ପୁଣି ନିର୍ଦ୍ଧନ ବ୍ୟକ୍ତିର ସକଳ ଶୂନ୍ୟ । ଦାରିଦ୍ର୍ୟ ଅପେକ୍ଷା ମୃତ୍ୟୁ ଭଲ, କାରଣ ମରଣ ଅଳ୍ପ କଷ୍ଟଦାୟକ, ଦରିଦ୍ରତା ଯାବଜ୍ଜୀବନ କ୍ଲେଶଦାୟକ । ସେହି ଇନ୍ଦ୍ରିୟ ସକଳ, ତୀକ୍ଷ୍ଣବୁଦ୍ଧି, ସେହି ନାମ, ସେହି ବଚନ ଏବଂ ସେହି ପୁରୁଷ ପୂର୍ବବତ୍ ଅଛି; କିନ୍ତୁ ଅର୍ଥାଭାବରେ କ୍ଷଣକାଳ ମଧ୍ୟରେ ଅନ୍ୟରୂପ ହୋଇଯାଏ ।'

ଏହି ସକଳ କଥା ଶୁଣି ମୁଁ ଭାବିଲି ଯେ, ବର୍ତ୍ତମାନ ଆଉ ମୋର ଏଠାରେ ରହିବା ଉଚିତ ନୁହେଁ । ଦୈବ ପ୍ରତିକୂଳ ହେଲେ

---

ଉପକାର ଅପକାର ଏ ଦୁଇ କାରଣେ,

ପୁଣି ସକଳ ସାଧନା ବ୍ୟର୍ଥ ହେଲେ ମନସ୍ୱୀ ଦରିଦ୍ର ବ୍ୟକ୍ତିର ବନଗମନ ଭିନ୍ନ ଆଉ କଣ ସୁଖକର ହୋଇପାରେ ? ଅନ୍ୟ କାହାକୁ ଏ ସକଳ ଘଟନା କହିବା ଅନୁଚିତ । କାରଣ, ବୁଦ୍ଧିମାନ୍ ବ୍ୟକ୍ତି ସ୍ୱଗୃହର ଦୁର୍ବ୍ୟବହାର, ଅର୍ଥନାଶ, ମନସ୍ତାପ, ପ୍ରବଞ୍ଚନା ଏବଂ ମାନହାନି କଦାପି ପ୍ରକାଶ କରେ ନାହିଁ । ନିଜର ପରମାୟୁ, ବିତ୍ତ, ଗୃହଚ୍ଛିଦ୍ର, ମନ୍ତ୍ର, ଔଷଧ, ତପସ୍ୟା, ଦାନ ଏବଂ ଅପମାନ ଏହି ସମସ୍ତ ବିଷୟ ସତର୍କତା ସହିତ ଗୋପନ ରଖିବା ଉଚିତ । ମାନୀ ବ୍ୟକ୍ତି ବରଂ ପ୍ରାଣତ୍ୟାଗ କରି ପାରେ, ତଥାପି ଦୈନ୍ୟ ପ୍ରକାଶ କରି ପାରେ ନାହିଁ । ଅଗ୍ନି ବରଂ ନିର୍ବାଣକୁ ପ୍ରାପ୍ତ ହୁଏ, ତଥାପି ଶୀତଳ ହୁଏ ନାହିଁ । ସୁଗନ୍ଧ ପୁଷ୍ପଗୁଚ୍ଛ ପରି ମନସ୍ୱୀ ଲୋକର ଦୁଇ ଗୋଟି ବୃତ୍ତି । ଯେପରି ପୁଷ୍ପଗୁଚ୍ଛ ସମସ୍ତଙ୍କ ମସ୍ତକରେ ରହେ ନଚେତ୍ ବନରେ ଶୁଖି ଝଡ଼ିଯାଏ, ସେହିପରି ଉଦାରହୃଦୟ-ବ୍ୟକ୍ତି ମଧ୍ୟ ସମସ୍ତଙ୍କଠାରୁ ଆଦର ପାଏ, ନଚେତ୍ ନିର୍ଜନ ବନରେ ପ୍ରାଣତ୍ୟାଗ କରେ । ଏହି ସ୍ଥାନରେ ଭିକ୍ଷା କରି ଜୀବନଯାପନ କରିବା ନିତାନ୍ତ ନିନ୍ଦନୀୟ । ଧନହୀନ ଲୋକ ପକ୍ଷରେ ଅଧମ କୃପଣକୁ ପ୍ରାର୍ଥନା କରି ବଞ୍ଚିବା ଅପେକ୍ଷା ଅଗ୍ନିରେ ପ୍ରାଣ ଦେବା ଭଲ ।

ନିର୍ଦ୍ଧନ ବ୍ୟକ୍ତି ଦରିଦ୍ରତା ହେତୁରୁ ଲଜ୍ଜା ପାଏ, ଲଜ୍ଜିତ ହେଲେ ସାମର୍ଥ୍ୟବିହୀନ ହୁଏ, ବଳହୀନ ହେଲେ ସର୍ବତ୍ର ଅପମାନ ଓ ଅନାଦର ପାଏ, ଅନାଦୃତ ହେଲେ ତାହାର ଆତ୍ମାରେ ଅବଜ୍ଞା ଉପସ୍ଥିତ ହୁଏ, ଅବଜ୍ଞା ହେତୁରୁ ମନସ୍ତାପ ପାଇଥାଏ, ବିଷାଦରେ ତାହାର ବୁଦ୍ଧି ଲୋପ ହୁଏ, ବୁଦ୍ଧିହୀନ ହେଲେ ବିନାଶ ଘଟେ । ହାୟ ! ଦରିଦ୍ରତା ହିଁ ସର୍ବନାଶର କାରଣ । ମିଥ୍ୟା କହିବା ଅପେକ୍ଷା କଥା ନ କହିବା ଭଲ; ଖଳ କଥାରେ ବିଶ୍ୱାସ ରଖିବା ଅପେକ୍ଷା

ପ୍ରାଣତ୍ୟାଗ ହିଁ ଭଲ; ପର ଧନରେ ସୁଖଭୋଗ କରିବା ଅପେକ୍ଷା ଭିକ୍ଷା କରି ବଞ୍ଚିବା ଭଲ; ଦୁଷ୍ଟ ବଳଦ ରଖିବା ଅପେକ୍ଷା ଗୋଶାଳା ଶୂନ୍ୟ ରଖିବା ଭଲ; ବିଗ୍ଭରଣୂନ୍ୟ ରାଜାର ପ୍ରଜା ହେବା ଅପେକ୍ଷା ବନବାସହିଁ ଭଲ; ପୁଣି ଅଧମ ଲୋକର ଉପାସନା କରିବା ଅପେକ୍ଷା ମରଣ ଭଲ ।

ଯେପରି ପରସେବା ସମସ୍ତ ମାନସମ୍ଭ୍ରମ ନଷ୍ଟକରେ, ଯେପରି ଈଶ୍ୱରଚିନ୍ତା ସକଳପାପ ଧ୍ୱଂସ କରେ, ଯେପରି ଜ୍ୟୋତ୍ସ୍ନା ଅନ୍ଧକାର ବିଦୂରିତ କରେ, ଯେପରି ବୃଦ୍ଧାବସ୍ଥା ଶରୀରର ଲାବଣ୍ୟ ହରଣ କରେ, ସେପରି ଯାଚଜ୍ଞ ଗୁଣରାଶି ତିରୋହିତ କରେ । ଏହା ବିବେଚନା କରି ମୁଁ କିଣ ପୁନର୍ବାର ପରଅନ୍ନରେ ଆତ୍ମପୋଷଣ କରିବ ? ହାଃ ! କି କଷ୍ଟ ! ତାହା ତ ହିଂସ୍ର ମୃତ୍ୟୁଦ୍ୱାର ସ୍ୱରୂପ । କାରଣ, ଯେ ଚିରରୋଗୀ, ଯେ ଯାବଜ୍ଜୀବନ ବିଦେଶରେ ବାସ କରେ, ଯେ ପରାନ୍ନରେ ପ୍ରତିପାଳିତ ଏବଂ ଯେ ପରଗୃହରେ ଚିରକାଳ ଅବସ୍ଥିତି କରେ, ତାହାର ଜୀବିତ ରହିବା ଓ ମୃତ୍ୟୁପ୍ରାପ୍ତ ହେବା ସମାନ; ପକ୍ଷାନ୍ତରେ ତାହାର ମରଣ ହିଁ ବିଶ୍ରାମ, ଅର୍ଥାତ୍ ସର୍ବକ୍ଳେଶାପହାରକ ।

ମୁଁ ଏହିପରି ଆଲୋଚନା କରି ସୁଦ୍ଧା ପୁନର୍ବାର ଲୋଭରେ ପଡ଼ି ସେହି ପରିବ୍ରାଜକଙ୍କର ଅନ୍ନ ଭକ୍ଷଣ କରିବାକୁ ଚେଷ୍ଟିତ ହେଲି । କଥିତ ଅଛି, ଲୋଭରେ ବୁଦ୍ଧି ବିଚଳିତ ହୁଏ, ଲୋଭ ତୃଷ୍ଣା ଜନ୍ମାଏ, ଯେ ସେହିତୃଷ୍ଣାର ବଶବର୍ତ୍ତୀ ହୁଏ, ସେ ଇହଲୋକରେ ଓ ପର-ଲୋକରେ ଦୁଃଖଭୋଗ କରେ । ତା ପରେ ମୁଁ ଧୀରେ ଧୀରେ ଯିବା ସମୟରେ ବୀଣାକର୍ଣ୍ଣ ସେହି ଜୀର୍ଣ୍ଣ ବଂଶଦଣ୍ଡ ଦ୍ୱାରା ମୋତେ ଆଘାତ

---

ବିପଦ ଆସିଲେ ଭୟ ନ ରଖିବ ମନେ,

କରିବାରୁ ମୁଁ ଭାବିଲି—ଲୋଭୀ ଓ ଅସନ୍ତୁଷ୍ଟ ବ୍ୟକ୍ତି ସର୍ବଦା ଆତ୍ମଦ୍ରୋହୀ ହୁଏ । ଯାହାର ମନ ସନ୍ତୋଷପୂର୍ଣ୍ଣ ତାହାର ଭାଗ୍ୟରେ ସକଳ ପ୍ରକାର ସମ୍ପତ୍ତିଲାଭ ଘଟିଥାଏ; ଯାହାର ଚରଣ ଚର୍ମପାଦୁକାରେ ଆବୃତ, ତାହା ପକ୍ଷରେ ପୃଥିବୀର ସକଳ ସ୍ଥଳ ଯେପରି ଚର୍ମାବୃତ ବୋଲି ବୋଧହୁଏ । ଯେଉଁମାନେ ସନ୍ତୋଷରୂପ ଅମୃତ-ପାନରେ ପରିତୃପ୍ତ ଏବଂ ଯେଉଁମାନଙ୍କର ଚିତ୍ତ ସତତ ପ୍ରଶାନ୍ତ, ସେମାନେ ଯେଉଁ ସୁଖ ଅନୁଭବ କରନ୍ତି ଧନଲୋଭରେ ଅନ୍ଧ ହୋଇ ଇତସ୍ତତଃ ଧାବିତ ହେବା ଲୋକମାନଙ୍କ ଭାଗ୍ୟରେ ସେପରି ସୁଖଭୋଗ ଘଟିବ ବା କିପରି ?

"ସାର୍ଥକ ତାହାର ବିଦ୍ୟା ତାହାର ସାଧନା,
ସମ୍ମୁଖେ ବୈରାଗ୍ୟ ଯା'ର ପଶ୍ଚାତେ କାମନା ।"

ସେହି ଲୋକର ଜୀବନ ଧନ୍ୟ, ଯାହାର ଜୀବନରେ କେବେହେଲେ ଧନୀଦ୍ୱାରକୁ ଯିବା ବା ବିରହ ବେଦନା ସହ୍ୟ-କରିବ ଅଥବା ଦୀନହୀନ ପରି ବାକ୍ୟ ପ୍ରୟୋଗ କରିବା ଘଟିନାହିଁ । ଯେ ଧନତୃଷ୍ଣାର ବଶବର୍ତ୍ତୀ ତାହା ପକ୍ଷରେ ଶତଯୋଜନ ମଧ୍ୟ ଦୂର ନୁହେ; କିନ୍ତୁ ସନ୍ତୁଷ୍ଟଚିତ୍ତ ବ୍ୟକ୍ତି ନିଜ ହସ୍ତସ୍ଥିତ ଧନ ପ୍ରତି ମୁଦ୍ଧା ତୁଚ୍ଛ ଜ୍ଞାନ କରେ । ଅତଏବ ବର୍ତ୍ତମାନ ନିଜ ଅବସ୍ଥାର ଉପଯୁକ୍ତ କାର୍ଯ୍ୟ ସ୍ଥିର କରିବାହିଁ ଶ୍ରେୟସ୍କର ।

ଧର୍ମ କାହାକୁ କହନ୍ତି ? ସକଳ ପ୍ରାଣୀ ପ୍ରତି ଦୟା ପ୍ରକାଶ କରିବାହିଁ ପ୍ରକୃତ ଧର୍ମ । ସୁଖ କଣ ? ନିତ୍ୟ ନୀରୋଗିତାହିଁ ପ୍ରକୃତ ସୁଖ । ସ୍ନେହ କାହାକୁ ବୋଲଯାଏ ? ସକଳ ଜୀବ ପ୍ରତି ସମାନ ପ୍ରଣୟ ହିଁ ପ୍ରକୃତ ସ୍ନେହ । ପାଣ୍ଡିତ୍ୟ କଣ ? ବିଚାରିତ କାର୍ଯ୍ୟ

---

ପ୍ରତିକାର ତାହାର କରିବ ପ୍ରାଣପଣେ ।

ନିର୍ଣ୍ଣୟହିଁ ପ୍ରକୃତ ପାଣ୍ଡିତ୍ୟ । ବିପଦ ସମୟରେ ଯେ ହିତାହିତ ନିର୍ଣ୍ଣୟ କରେ, ସେ ପ୍ରକୃତ ପଣ୍ଡିତ; ଯେ ତାହା କରି ନ ପାରେ ତାହାର ସର୍ବଦା ବିପଦ ଘଟିଥାଏ । ବଂଶମର୍ଯ୍ୟାଦା ରକ୍ଷା ନିମିତ୍ତ ଜଣକୁ ତ୍ୟାଗ କରିବ, ଗ୍ରାମ ନିମିତ୍ତ କୁଳ ତ୍ୟାଗ କରିବ, ସ୍ୱଦେଶ ନିମିତ୍ତ ଗ୍ରାମ ପରିତ୍ୟାଗ କରିବ ଏବଂ ଆତ୍ମରକ୍ଷା ନିମିତ୍ତ ପୃଥିବୀ ପରିତ୍ୟାଗ କରିବ । ଅନାୟାସଲଭ୍ୟ ଜଳ ଏବଂ ଭୟମିଶ୍ରିତ ସୁସ୍ୱାଦୁ ଅନ୍ନ ଏହି ଉଭୟ ମଧ୍ୟରୁ ପର୍ଣ୍ଣିରେ ମନର ଶାନ୍ତି ହୁଏ ତାହାହିଁ ସୁଖକର । ମୁଁ ଏହା ବିବେଚନା କରି ଏହି ନିର୍ଜ୍ଜନ ବନକୁ ଆସିଅଛି, କାରଣ—ହିଂସ୍ରଜନ୍ତୁ ପରିପୂର୍ଣ୍ଣ ଅରଣ୍ୟରେ ଅବସ୍ଥାନ, ବୃକ୍ଷତଳରେ ବାସ, ପକ୍ୱଫଳ ଭୋଜନ ଓ ଜଳପାନ, ତୃଣଶଯ୍ୟାରେ ଶୟନ, ବଲ୍‌କଳ ପରିଧାନ ସୁଖର କାରଣ ହୋଇପାରେ । କିନ୍ତୁ ଆତ୍ମୀୟଗଣଙ୍କ ମଧ୍ୟରେ ନିର୍ଦ୍ଧନ ଅବସ୍ଥାରେ ଜୀବନ ଧାରଣ କଦାପି ସୁଖକର ନୁହେ ।

ତା ପରେ, ପୁଣ୍ୟବଳରେ ଏହି ମିତ୍ର ମୋ ସହିତ ପ୍ରଣୟ ବନ୍ଧନ କରି ମୋତେ ଅନୁଗୃହୀତ କରିଅଛନ୍ତି । ବର୍ତ୍ତମାନ ସୌଭାଗ୍ୟକ୍ରମେ ମୁଁ ସ୍ୱର୍ଗତୁଲ୍ୟ ଆପଣଙ୍କ ଆଶ୍ରୟ ଲାଭ କରିଅଛି । କାବ୍ୟରୂପ ଅମୃତର ଆସ୍ୱାଦ ପୁଣି ସାଧୁସଙ୍ଗ, ଏହି ଦୁଇଟିହିଁ ସଂସାରରୂପ ବିଷବୃକ୍ଷର ମଧୁମୟ ଫଳ । ଏହି ଅସାର ସଂସାରରେ ସଜ୍ଜନ-ସଂସର୍ଗ, ନାରାୟଣଙ୍କଠାରେ ଭକ୍ତି ଓ ଗଙ୍ଗାଜଳରେ ସ୍ନାନ ଏହି ତିନୋଟିହିଁ ସାରବସ୍ତୁ ।

ମନ୍ଥର କହିଲା— ଧନ ସକଳ ଚରଣଧୂଳି ତୁଲ୍ୟ ଅକିଞ୍ଚିତ୍-କର, ଯୌବନ ପାର୍ବତ୍ୟ ନିର୍ଝରିଣୀ ପରି ଚଞ୍ଚଳ, ମନୁଷ୍ୟତ୍ୱ

---

ଅଜ୍ଞାନ ନିଶ୍ଚୟ ଜାଣ ଶୋକର କାରଣ,

ଜଳବୁଦ୍‌ବୁଦ୍‌ବତ୍ ଅତ୍ୟନ୍ତ ଅସ୍ଥିର, ପୁଣି ଜୀବନ ଫେନସଦୃଶ କ୍ଷଣସ୍ଥାୟୀ । କିନ୍ତୁ ଧର୍ମ ଅକ୍ଷୟ ଓ ସକଳ ସୁଖର କାରଣ; ଯେ ସ୍ୱର୍ଗଦ୍ୱାରମୋଚକ ସେହି ଧର୍ମର ଅନୁଷ୍ଠାନ ନ କରେ ସେ ବୃଦ୍ଧାବସ୍ଥାରେ ଅନୁତପ୍ତ ହୋଇ ଶୋକାନଳରେ ଦଗ୍ଧ ହୁଏ । ଆପଣ ଅଶେଷ ଧନ ସଞ୍ଚୟ କରିଅଛନ୍ତି, ସେହେତୁରୁ ଏହି ଅନିଷ୍ଟ ଘଟିଅଛି । ଶୁଣନ୍ତୁ— ସତ୍‌ପାତ୍ରରେ ଦାନ କଲେ ଧନସଞ୍ଚୟ ସାର୍ଥକ ହୁଏ, ଦାନରେ ଧନ ବଢ଼େ । କୃପଣ ବ୍ୟକ୍ତି ଭୂଗର୍ଭରେ ଧନ ପୋତି ନିଜର ନରକ-ପଥ ପରିଷ୍କାର କରେ । ମାତ୍ର ଯେଉଁ ବ୍ୟକ୍ତି ଦାନ, ଭୋଗ ନ କରି ଧନ-ସଞ୍ଚୟର ଅଭିଳାଷ କରେ, ସେ ଅନ୍ୟର ପ୍ରୟୋଜନ ସାଧନାର୍ଥ ଭାରବାହୀତୁଲ୍ୟ କେବଳ କ୍ଲେଶ ଭୋଗ କରିଥାଏ ।

ଦାନ ଓ ଉପଭୋଗ ନ କଲେ ସୁଦ୍ଧା ଯଦି ସେହି ଧନରେ ଲୋକେ ଧନୀ ହୁଅନ୍ତି, ତାହାହେଲେ ଭୂମିରେ ପୋତା ହୋଇଥିବା ଧନରେ ଆମ୍ଭେମାନେ ମଧ୍ୟ ଧନବାନ୍ । ଯାହାର ଦିନ ଦାନ ଓ ଉପଭୋଗଶୂନ୍ୟ ହୋଇ ଗତ ହୁଏ, ସେ କର୍ମକାରର ଭାତିପରି ନିଶ୍ୱାସ ତ୍ୟାଗକରି ସୁଦ୍ଧା ମୃତବତ୍ ଥାଏ । ଯେଉଁ ଧନ ଦତ୍ତ ବା ଭୁକ୍ତ ହୁଏ ନାହିଁ, ସେ ଧନରୁ ପ୍ରୟୋଜନ କଣ ? ଯେ ଶତ୍ରୁମାନଙ୍କୁ ପରାଜୟ କରି ନ ପାରେ ତାହାର ସାମର୍ଥ୍ୟ ଥିବାର ଫଳ ବା କଣ ? ଯେ ଧର୍ମାନୁଷ୍ଠାନ କରେ ନାହିଁ, ତାହାର ଶାସ୍ତ୍ରଜ୍ଞାନର ଆବଶ୍ୟକତା କଣ ? ଯେ ଇନ୍ଦ୍ରିୟପରବଶ, ତାହାର ଜୀବନ ଥାଇ ଲାଭ ବା କଣ ?

ଉପଭୋଗ ନ ଥିବାରୁ କୃପଣର ଧନରେ ସର୍ବସାଧାରଣଙ୍କର ସମାନ ଅଧିକାର ରହେ । କେବଳ ଧନକ୍ଷୟ ଅବସ୍ଥାରେ

---

'ଏହି ଧନ ତାହାର' ବୋଲି ଲୋକେ କହୁଥାନ୍ତି ମାତ୍ର । କୃପଣର ଧନ ଦେବତା ଓ ବ୍ରାହ୍ମଣ ଉଦ୍ଦେଶ୍ୟରେ ପୁଣି ନିଜର ଓ ବନ୍ଧୁମାନଙ୍କ ଉପକାର ନିମିତ୍ତ ବ୍ୟୟିତ ହୁଏ ନାହିଁ; କିନ୍ତୁ ତାହା ଅଗ୍ନି, ଚୋର ଓ ରାଜା କର୍ତ୍ତୃକ ନଷ୍ଟ ହୁଏ । ଦାନ, ଭୋଗ ଏବଂ କ୍ଷୟ—ଧନର ଏହି ତିନି ଅବସ୍ଥା । ଯେଉଁ ବ୍ୟକ୍ତି ଦାନ ବା ଉପଭୋଗ କରେ ନାହିଁ, ତାହାର ଧନର ତୃତୀୟ ଅବସ୍ଥା ଅର୍ଥାତ୍ ବିନାଶ ଘଟିଥାଏ । ମଧୁରବାକ୍ୟ-ସହିତ ଦାନ, ଅହଙ୍କାରରହିତ ଜ୍ଞାନ, କ୍ଷମାଯୁକ୍ତ ବୀରତ୍ୱ ଏବଂ ଦାନାର୍ଥ ଧନ—ଏହି ଚାରୋଟି ବିଷୟ ଜଗତରେ ଦୁର୍ଲ୍ଲଭ । ପ୍ରତିଦିନ କିଛି କିଛି ଧନ ସଞ୍ଚୟ କରିବା ଆବଶ୍ୟକ; କିନ୍ତୁ ଅତିସଞ୍ଚୟ କରିବା ଅନୁଚିତ । ଦେଖ, ଅତିସଞ୍ଚୟ ଯୋଗୁଁ ଶୃଗାଳ ଧନୁର୍ବିଦ୍ଧ ହୋଇ ପ୍ରାଣ ହରାଇଲା ।

କାକ ଓ ମୂଷିକ ପଚାରିଲେ - ତାହା କିଣ ?

ମନ୍ଥର କହିଲା—

———

## ବ୍ୟାଧ, ମୃଗ, ଶୂକର, ସର୍ପ ଓ ଶୃଗାଳ

କଲ୍ୟାଣକଟକ ନାମକ ସ୍ଥାନରେ ଭୈରବ ନାମରେ ଜଣେ ବ୍ୟାଧ ଥିଲା । ସେ ଏକଦିନ ଶିକାର କରିବା ଅଭିପ୍ରାୟରେ ବିନ୍ଧ୍ୟାରଣ୍ୟରେ ଯାଇ ଉପନୀତ ହେଲା । ସେଠାରେ ସେ ଗୋଟିଏ ମୃଗ ବଧ କଲା । ମୃଗଟିକୁ ଧରି ବାହୁଡ଼ିବା ସମୟରେ ସେ ଏକ ଭୀଷଣାକୃତି ଶୂକର ଦେଖିଲା । ତହୁଁ ମୃଗଟିକୁ ଭୂମିରେ ରଖି ବାଣଦ୍ୱାରା ସେହି ଶୂକରକୁ ଆହତ କଲା । ଶୂକର ପ୍ରାଣତ୍ୟାଗ

---

ପୁଣି ଯାର ସମସ୍ତ ଇନ୍ଦ୍ରିୟ ବଶେ ରହେ,

କରିବା ପୂର୍ବେ ଭୟଙ୍କର ଗର୍ଜ୍ଜନ କରି ଆସି ସେହି ବ୍ୟାଧର ଉଦର ବିଦୀର୍ଣ୍ଣ କଲା । ବ୍ୟାଧ ଛିନ୍ନମୂଳ ବୃକ୍ଷତୁଲ୍ୟ ଭୂମିରେ ପଡ଼ି ପଞ୍ଚତ୍ୱ ପ୍ରାପ୍ତହେଲା ।

ସେହି ବ୍ୟାଧ ଓ ଶୂକରର ପଦଦଳନରେ ସେଠାରେ ଗୋଟିଏ ସର୍ପ ମଧ୍ୟ ହତହେଲା ।

ତଦନନ୍ତରଂ ଦୀର୍ଘରବ ନାମକ ଏକ ଶୃଗାଳ ଆହାର ନିମିତ୍ତ ଭ୍ରମଣ କରୁଁ କରୁଁ ସେଠାରେ ଉପସ୍ଥିତ ହେଲା । ସେ ସେହି ମୃଗ, ଶୂକର, ବ୍ୟାଧ ଓ ସର୍ପର ମୃତଦେହ ଦେଖି ଭାବିଲା— ଆହା ! ଆଜ ମୋର କି ଶୁଭଦୃଷ୍ଟ ! ପ୍ରଚୁର ଖାଦ୍ୟ ମିଳିଅଛି । ପ୍ରାଣୀମାନଙ୍କର ଦୁଃଖ ଯେପରି ଅତର୍କିତ ଭାବରେ ଉପସ୍ଥିତ ହୁଏ, ସୁଖ ମଧ୍ୟ ସେପରି ଉପସ୍ଥିତ ହୋଇଥାଏ । ଏହି ବିଷୟରେ ଦୈବହିଁ ପ୍ରବଳ । ଏମାନଙ୍କର ମାଂସରେ ମୋର ତିନିମାସ ପରମ ସୁଖରେ ଚଳିବ । ମନୁଷ୍ୟଟି ଖାଇବାକୁ ଏକମାସ ଲାଗିବ, ମୃଗ ପୁଣି ଶୂକର ଏହି ଦୁଇଟିରେ ଦୁଇମାସ ଚଳିଯିବ, ସର୍ପଟି ଏକଦିନ ସକାଶେ ଯଥେଷ୍ଟ ଏବଂ ଏହି ଧନୁକର ଗୁଣଟି ଭକ୍ଷଣ କରି ଆଜ ଦିନଟି କଟାଇଦେବି । ଏହି ଧନୁକସଂଲଗ୍ନ ନାଡ଼ିନିର୍ମିତ ଗୁଣଟି ଯେତେ ସୁସ୍ୱାଦୁ ନହେଲେ ହେଁ, ପ୍ରଥମ କ୍ଷୁଧାର ଧକ୍କାରେ ତାହାହିଁ ଭକ୍ଷଣ କରିବି । ଏହା ଭାବି ତାହା ଖାଇବା ନିମିତ୍ତ ଶୃଗାଳ ଉଦ୍‌ଯୋଗ କଲା । କିନ୍ତୁ ସେ ସେହି ଧନୁକର ଗୁଣ ଦନ୍ତରେ କାଟିବା କ୍ଷଣି ଧନୁକର ଅଗ୍ରଭାଗ ସଜୋରରେ ଭାଙ୍ଗିଯାଇ ତାହାର ମର୍ମସ୍ଥାନରେ ବିଦ୍ଧ ହେଲା । ସୁତରାଂ ସେ ବିକଟ ଚିତ୍କାର

ଗୃହେ ଥାଇ ମଧ୍ୟ ତାର ତପଃସିଦ୍ଧ ହୁଏ ।

କରି ପଞ୍ଚର୍ତ୍ତ ପ୍ରାପ୍ତହେଲ । ସେ କାରଣରୁ ମୁଁ କହୁଅଛି—ନିତ୍ୟ ସଞ୍ଚୟ କରିବ; କିନ୍ତୁ ଅତିସଞ୍ଚୟ କର୍ତ୍ତବ୍ୟ ନୁହେ ।

ଧନୀବ୍ୟକ୍ତି ଯେଉଁ ଧନ ସତ୍ପାତ୍ରରେ ବିତରଣ କରେ ପୁଣି ଯେଉଁ ଧନ ଭୋଗ କରେ ତାହାହିଁ ତାହାର ପ୍ରକୃତ ଧନ ଏବଂ ଯାହା ଅବଶିଷ୍ଟ ରହେ ତାହା ଅନ୍ୟ କୌଣସି ବ୍ୟକ୍ତି ସକାଶେ ସଞ୍ଚୟ କରେ ମାତ୍ର । ଏବେ ଏହିସବୁ କଥା ଥାଉ; ଅତୀତ ବିଷୟର ବର୍ଣ୍ଣନାରେ ପ୍ରୟୋଜନ କଣ ? ଯାହା ଦୁଷ୍ପ୍ରାପ୍ୟ ତାହା ପାଇବା ନିମିତ୍ତ ପ୍ରାଜ୍ଞବ୍ୟକ୍ତିମାନେ ଅଭିଳାଷ କରନ୍ତି ନାହିଁ, ଯାହା ନଷ୍ଟ ହୋଇଯାଏ ସେଥି ସକାଶେ ଶୋକ କରନ୍ତି ନାହିଁ ଏବଂ ବିପଦ ସମୟରେ ମୋହାଚ୍ଛନ୍ନ ହୁଅନ୍ତି ନାହିଁ ।

ଅତଏବ ହେ ମିତ୍ର ହିରଣ୍ୟକ ! କାର୍ଯ୍ୟରେ ସର୍ବଦା ଉତ୍ସାହଶୀଳ ହୁଅ । 'ମନୁଷ୍ୟ ଶାସ୍ତ୍ରାଧ୍ୟୟନ କରି ସୁଦ୍ଧା ମୂର୍ଖ ଥାଏ; କିନ୍ତୁ ଯେ ଶାସ୍ତ୍ରୋକ୍ତ ବିଧି ଅନୁସାରେ କାର୍ଯ୍ୟ କରେ ସେ ପ୍ରକୃତ ପଣ୍ଡିତ ପଦବାଚ୍ୟ । ନିୟମାନୁସାରେ ସେବନ କଲେ ସୁନିର୍ବାଚିତ ଔଷଧ ନାମମାତ୍ରକେ ରୋଗ ଦୂର କରିପାରେ କି ? ଶାସ୍ତ୍ରଜ୍ଞାନ ଉତ୍ସାହହୀନ ବ୍ୟକ୍ତିର ଲେଶମାତ୍ର ଉପକାର କରେ ନାହିଁ । ପ୍ରଦୀପ ଅନ୍ଧହସ୍ତରେ ରହି ସୁଦ୍ଧା କଣ ପଦାର୍ଥ-ଦର୍ଶକ ହୋଇପାରେ ? ଅତଏବ ସଖେ ! ଏପରି ଶୋଚନୀୟ ଅବସ୍ଥାରେ ଧୈର୍ଯ୍ୟଧାରଣ କରିବା ହିଁ ଉଚିତ । ସୁଖ ଉପସ୍ଥିତ ହେଲେ ତାହା ସେବନ କରିବ ଏବଂ ଦୁଃଖ ଉପସ୍ଥିତ ହେଲେ ତାହା ସହ୍ୟ କରିବ । ସୁଖ ଏବଂ ଦୁଃଖ ଏହି ସଂସାରରେ ଚକ୍ରବତ୍ ବୁଲୁଅଛି । ଯେପରି ଭେକଗଣ ( ଅନନ୍ୟୋପାୟ ହୋଇ ) କୂପ ମଧ୍ୟରେ ବସତି କରନ୍ତି, ଯେପରି

ସାରସାଦି ପକ୍ଷୀଗଣ ଜଳପୂର୍ଣ୍ଣ ଜଳାଶୟର ଆଶ୍ରୟ ଗ୍ରହଣ କରନ୍ତି, ସେହିପରି ସକଳ ସମ୍ପତ୍ତି ଗୁଣାକୃଷ୍ଟ ହୋଇ ଉଦ୍ୟମଶୀଳ ପୁରୁଷ ନିକଟରେ ଆସି ଉପସ୍ଥିତ ହୁଏ । ଯେଉଁ ବ୍ୟକ୍ତି ଅତୁଳ ଉତ୍ସାହୀ, ଅଟଳ ପ୍ରଣୟୀ, ଶୂର, ବଳବାନ୍, କୃତଜ୍ଞ, କର୍ମତତ୍ପର, ବ୍ୟସନରେ ଅନାସକ୍ତ ପୁଣି କାର୍ଯ୍ୟାନୁଷ୍ଠାନବେତ୍ତା, ସେହି ବ୍ୟକ୍ତିର ଗୃହରେ ସୌଭାଗ୍ୟଲକ୍ଷ୍ମୀ ସର୍ବଦା ବାସ କରନ୍ତି । ପଣ୍ଡିତ ବ୍ୟକ୍ତି ନିର୍ଦ୍ଧନ ହେଲେ ସୁଦ୍ଧା ପୂଜିତ ଓ ଉଚ୍ଚପଦ ପ୍ରାପ୍ତ ହୁଏ; କୃପଣ ଧନବାନ୍ ହେଲେହେଁ ଅବମାନନା ପ୍ରାପ୍ତ ହୋଇଥାଏ । କୁକୁର ସ୍ୱର୍ଣ୍ଣହାରରେ ବିଭୂଷିତ ହେଲେ ମଧ୍ୟ ସିଂହର ସ୍ୱାଭାବିକ କାନ୍ତି ଓ ଗୁଣଲାଭ କରି ପାରେ ? ଧନବାନ୍ ବୋଲି ତୁମ୍ଭର ଏତେ ଗର୍ବ ହୁଏ କି ହେତୁ ? ପୁଣି ଧନହୀନ ହେଲେ ଏତେ ଚିନ୍ତିତ ହୁଅ କାହିଁକି ? ମନୁଷ୍ୟର ଉନ୍ନତି, ଅବନତି ହସ୍ତସ୍ଥିତ କନ୍ଦୁକ ତୁଲ୍ୟ କେବେ ଊର୍ଦ୍ଧ୍ୱରେ କେବେ ବା ଅଧୋଦେଶରେ ଅବସ୍ଥାନ କରେ ।

ଦୁର୍ଜ୍ଜନପ୍ରଣୟ, ମେଘଚ୍ଛାୟା, ନୂତନ ଶସ୍ୟ, ରମଣୀଯୌବନ ଓ ଧନ ଏହି ସମସ୍ତ ବସ୍ତୁ ଅଳ୍ପକ୍ଷଣ ମାତ୍ର ଭୋଗ୍ୟ । ଜୀବିକାନିର୍ବାହ ନିମିତ୍ତ ବିଶେଷ ଆୟାସର ପ୍ରୟୋଜନ ନାହିଁ, ବିଧାତା ତାହା ଠିକ୍ କରି ରଖିଅଛନ୍ତି । ଦେଖ, ଶିଶୁ ଗର୍ଭରୁ ଭୂମିଷ୍ଠ ହେବାକ୍ଷଣି ତାହାର ମାତାର ସ୍ତନରୁ ଦୁଗ୍ଧ କ୍ଷରିତ ହୋଇଥାଏ । ସଖେ ! ଯେ ହଂସକୁ ଶୁକ୍ଳବର୍ଣ୍ଣ, ଶୁକକୁ ହରିତବର୍ଣ୍ଣ ଓ ମୟୂରକୁ ବିଚିତ୍ର ବର୍ଣ୍ଣରେ ସୁଶୋଭିତ କରି ନିର୍ମାଣ କରିଅଛନ୍ତି, ସେହି ବିଧାତାହିଁ ତୁମ୍ଭର ଜୀବିକାନିର୍ବାହର ଉପାୟ ସ୍ଥିର କରିଦେବେ । ପୁଣି ଅର୍ଥ ବିଷୟରେ ସାଧୁମାନେ ଯେଉଁ ନିଗୂଢ଼ କଥା କହିଅଛନ୍ତି, ତାହା ଶ୍ରବଣ କର—

---

ଗୃହହିଁ ତାହାର ପକ୍ଷେ ହୁଏ ତପୋବନ ।

"ଯାହାର ଅର୍ଜନେ ହୁଏ ଅଶେଷ ଯାତନା,
ପାଇଲେ ଯାହାକୁ ଯାଏ ବୁଦ୍ଧି-ବିବେଚନା;
ଯାହାର ବିନାଶେ ଲୋକ କରେ ହାହାକାର,
କହ ! ସେ ଧନ କେମନ ସୁଖର ଆଧାର ।"

ଧର୍ମ ସକାଶେ ଧନାର୍ଜନର ଚେଷ୍ଟା କରିବା ଅପେକ୍ଷା ବରଂ ନିଶ୍ଚେଷ୍ଟ ରହିବା ଭଲ; ଶରୀରରେ ପଙ୍କ ଲେପନ କରି ତା ପରେ ଧୌତ କରିବା ଅପେକ୍ଷା ତାହା ଆଦୌ ସ୍ପର୍ଶ ନ କରିବା ଉଚିତ । ରାଜା, ଜଳ, ଅଗ୍ନି, ଦସ୍ୟୁ ଏବଂ ଖଳଠାରେ ଧନମାନଙ୍କର ସର୍ବଦା ଭୟ ରହେ—ଯେପରି ଜୀବଗଣଙ୍କର ମରଣଭୟ ସତତ ବିଦ୍ୟମାନ । ଯେପରି ପକ୍ଷିଗଣ ଆକାଶରେ, ହିଂସ୍ରଜନ୍ତୁସମୂହ ଭୂତଳରେ ଏବଂ ମତ୍ସ୍ୟ ସକଳ ଜଳରେ ଆମିଷ ଭକ୍ଷଣ କରନ୍ତି, ସେପରି ଧନଶାଳୀ ବ୍ୟକ୍ତି ପ୍ରତାରକମାନଙ୍କ ଦ୍ୱାରା ଉପଭୁକ୍ତ ହୁଏ ।

ଭାଇ ! ଅର୍ଥ ପ୍ରଥମତଃ ଦୁଷ୍ପ୍ରାପ୍ୟ, ପରନ୍ତୁ ଯଦି କୌଣସି ପ୍ରକାରେ ତାହା ମିଳେ, ତାହାହେଲେ ତାହା ରକ୍ଷା କରିବା ଦୁରୂହ । ଲବ୍ଧଧନ ନଷ୍ଟ ହେଲେ ମୃତ୍ୟୁ ତୁଲ୍ୟ ଯନ୍ତ୍ରଣା ଉପସ୍ଥିତ ହୁଏ; ସେଥିରୁ କହୁଅଛୁ—ଅର୍ଥଚିନ୍ତାର ପ୍ରୟୋଜନ ନାହିଁ । ଏହି ସଂସାରରେ ଯଦି ଧନତୃଷ୍ଣା ପରିହାର କରାଯାଏ, ତାହାହେଲେ କିଏ ଧନୀ, ପୁଣି କିଏ ନିର୍ଦ୍ଧନ ? ଧନତୃଷ୍ଣାକୁ ପ୍ରଶ୍ରୟ ଦେଲେ ଦାସତ୍ୱ ଆସି ମସ୍ତକରେ ସ୍ଥାନ ଲାଭ କରେ । ଯେଉଁ ବସ୍ତୁର ଆଶା କରାଯାଏ, ତାହା ପାଇଲେ ପୁନର୍ବାର ନୂତନ ଆକାଂକ୍ଷା ଆସି ଉପସ୍ଥିତ ହୁଏ । ଅତଏବ ଯାହା ତ୍ୟାଗିଲେ ଆଶା ଏକାବେଳକେ ନିବୃତ୍ତ ହୁଏ— ଏପରି ବସ୍ତୁହିଁ ପ୍ରାର୍ଥନୀୟ । ଅଧିକ ଆଉ କଅଣ କହିବି ?

ବୁଦ୍ଧି ଯାର ବଳ ତାର ଜାଣିବ ନିଶ୍ଚୟେ,

ଆମ୍ଭେମାନେ ସମସ୍ତେ ମିଶି ଏହି ସ୍ଥାନରେ ପରମ ପ୍ରଣୟାଳାପରେ କାଳଯାପନ କରିବା, କାରଣ—ମହାତ୍ମାମାନଙ୍କର ପ୍ରୀତି ମରଣ ପର୍ଯ୍ୟନ୍ତ ରହେ; ସେମାନଙ୍କ କ୍ରୋଧ ଅଳ୍ପ ସମୟ ମଧ୍ୟରେ ପ୍ରଶାନ୍ତ ହୁଏ ଏବଂ ସେମାନେ ପ୍ରତ୍ୟୁପକାର ଲାଭର ବାସନା ନ ରଖି ଦାନ କରନ୍ତି ।

ଏହା ଶୁଣି ଲଘୁପତନକ କହିଲା—ମନ୍ଥର ! ତୁମ୍ଭେ ଧନ୍ୟ, ତୁମ୍ଭେ ସର୍ବଥା ପ୍ରଶଂସାଯୋଗ୍ୟ । ଯେପରି ପଙ୍କମଗ୍ନ ହସ୍ତୀକୁ ଉଦ୍ଧାର କରିବାକୁ ହସ୍ତୀହିଁ ସମର୍ଥ, ସେପରି ସାଧୁମାନେ ହିଁ ସାଧୁମାନଙ୍କୁ ବିପଦରୁ ଉଦ୍ଧାର କରି ପାରନ୍ତି । ଗୁଣଗ୍ରାହୀ ବ୍ୟକ୍ତିହିଁ ଗୁଣବାନ୍ ଜନ ପ୍ରତି ଅନୁରକ୍ତ ହୁଏ, ଗୁଣହୀନ ବ୍ୟକ୍ତି ଗୁଣଶାଳୀ ଲୋକ ପ୍ରତି ତୃପ୍ତ ହୁଏ ନାହିଁ । ଭ୍ରମର ସୁଦୂର ବନରୁ ଆସି ପଦ୍ମରେ ଉପସ୍ଥିତ ହୁଏ, କିନ୍ତୁ ଭେକ ଏକ ଜଳାଶୟରେ ରହି ସୁଦ୍ଧା ପଦ୍ମ ନିକଟକୁ ଆସେ ନାହିଁ । ଯାହା ନିକଟରୁ ଯାଚକ ବା ଶରଣାଗତ ବ୍ୟକ୍ତି ହତାଶ ହୋଇ ଫେରି ନ ଯାଏ, ସଂସାରରେ ମନୁଷ୍ୟମାନଙ୍କ ମଧ୍ୟରେ ସେହି ବ୍ୟକ୍ତିହିଁ ପ୍ରଶଂସନୀୟ, ସେହି ଶ୍ରେଷ୍ଠ, ସେହି ସାଧୁ ଏବଂ ସେହି ପୁଣ୍ୟବାନ୍ ବୋଲି କୀର୍ତ୍ତିତ ହୁଏ ।

ସେମାନେ ଏହିପରି ସ୍ୱେଚ୍ଛାନୁକ୍ରମେ ଆହାର ବିହାର କରି ସନ୍ତୁଷ୍ଟ ଚିତ୍ତରେ ପରମ ସୁଖରେ ସେଠାରେ ବାସ କରିବାକୁ ଲାଗିଲେ । ଅନନ୍ତର, ଏକଦିନ ଚିତ୍ରାଙ୍ଗ ନାମକ ଏକ ମୃଗ କୌଣସି କାରଣରୁ ଭୟ ପାଇ ସେହି ସ୍ଥାନରେ ଆସି ଉପସ୍ଥିତ ହେଲା । ଅବଶ୍ୟ ସେହି ମୃଗର ପଶ୍ଚାତରେ କୌଣସି ଭୟର ବିଷୟ ଥିବ, ଏହା ଆଶଙ୍କାରେ ମନ୍ଥର ଜଳରେ ଓ ମୂଷିକ ଗର୍ତ୍ତରେ

କାହିଁ ତାର ବଳ, ବୁଦ୍ଧି ଯାହାର ନରହେ ?

ପ୍ରବେଶ କଲେ ଏବଂ କାକ ଉଡ଼ିଯାଇ ଏକ ବୃକ୍ଷ ଉପରେ ବସିଲା । ପରେ, ଲଘୁପତନକ ବହୁଦୂର ପର୍ଯ୍ୟନ୍ତ ନିରୀକ୍ଷଣ କରି ସୁଦ୍ଧା କୌଣସି ଭୟର କାରଣ ଦେଖିଲା ନାହିଁ । ଅନନ୍ତର, ଲଘୁପତନକର କଥାରେ ସେମାନେ ସମସ୍ତେ ମିଳିତ ହୋଇ ପୁନର୍ବାର ସେହି ସ୍ଥାନରେ ଆସି ବସିଲେ । ମନ୍ଥର ଜିଜ୍ଞାସା କଲା—ଭଦ୍ର ମୃଗ ! ତୁମ୍ଭର ମଙ୍ଗଳ ତ ? ଏଠାରେ ସ୍ୱେଚ୍ଛାମତ ପାନ ଭୋଜନ କର । ଏହି ସ୍ଥାନରେ ରହି ବନକୁ ଅଳଙ୍କୃତ କର । ଚିତ୍ରାଙ୍ଗ କହିଲା, 'ମୁଁ ବ୍ୟାଧର ଭୟରେ ଭୀତ ହୋଇ ଆପଣମାନଙ୍କର ଶରଣାପନ୍ନ ହୋଇ ଅଛି । ଯେଉଁ ବ୍ୟକ୍ତି ଲୋଭବଶତଃ କିମ୍ବା ଭୟରେ ଶରଣାଗତ ଲୋକକୁ ପରିତ୍ୟାଗ କରେ, ତାହାର ବ୍ରହ୍ମହତ୍ୟା ସଦୃଶ ପାପହୁଏ, ଏହା ପଣ୍ଡିତଗଣ କହିଅଛନ୍ତି । ଅତଏବ ମୁଁ ଆପଣଙ୍କ ସହିତ ମିତ୍ରତା ସ୍ଥାପନ କରିବାକୁ ଇଚ୍ଛା କରେଁ ।'

ହିରଣ୍ୟକ କହିଲା—'ଆମ୍ଭମାନଙ୍କ ସହିତ ଆପଣଙ୍କ ବନ୍ଧୁତ୍ୱ ବିନା ଯତ୍ନରେ ତ ସମ୍ପନ୍ନ ହୋଇଅଛି, କାରଣ—

"ସ୍ୱଦେହଜ, ସ୍ୱଭାବଜ, କୁଳକ୍ରମାଗତ,
ବିପଦେ ରକ୍ଷିତ ଏହିମିତ୍ର ଚାରି ମତ ।"

ସୁତରାଂ ଆପଣ ଏହି ସ୍ଥାନକୁ ନିଜର ଆବାସ ମନେ କରି ଏଠାରେ ସ୍ୱଚ୍ଛନ୍ଦରେ ଅବସ୍ଥାନ କରନ୍ତୁ ।' ଏହି କଥା ଶୁଣି ମୃଗ ପ୍ରଫୁଲ୍ଲଚିତ୍ତରେ ଆହାର ଓ ଜଳପାନ କରି ଜଳାଶୟ-ସନ୍ନିହିତ ବଟ ବୃକ୍ଷର ଛାୟାରେ ଉପବିଷ୍ଟ ହେଲା ।

ଅନନ୍ତର ମନ୍ଥର ପ୍ରଶ୍ନ କଲା—'ସଖେ ମୃଗ ! କାହା ଭୟରେ ଭୀତ ହୋଇଅଛ ? ଏହି ନିର୍ଜନବନରେ କେବେ କଣ ବ୍ୟାଧମାନେ

---

ସ୍ୱାର୍ଥରେ ସତ୍ତ୍ୱ କାର୍ଯ୍ୟ କରେ ଯେଉଁ ଜନ,

ବିଚରଣ କରନ୍ତି ?' ମୃଗ କହିଲା—"କଳିଙ୍ଗ ଦେଶରେ ରୁକ୍ମାଙ୍ଗଦ ନାମରେ ଏକ ନରପତି ଅଛନ୍ତି । ସେ ଦିଗ୍‌ବିଜୟ ଉପଲକ୍ଷରେ ଚନ୍ଦ୍ରଭାଗା ନଦୀ ତୀରରେ ଆସି ଶିବିର ସନ୍ନିବେଶିତ କରି ରହିଅଛନ୍ତି । ପ୍ରାତଃକାଳରେ ସେ କର୍ପୂର ସରୋବର ନିକଟକୁ ଆସିବେ, ଏହି ଜନଶ୍ରୁତି ବ୍ୟାଧମାନଙ୍କ ମୁଖରୁ ଶୁଣା ଯାଉଅଛି । ଅତଏବ ଏଠାରେ ପ୍ରାତଃକାଳରେ ଅବସ୍ଥାନ କରିବା ଭୟଙ୍କର କାରଣ, ଏହା ବିବେଚନା କରି ଯାହା କରିବାକୁ ହେବ କରନ୍ତୁ ।" ଏହା ଶୁଣି ମନ୍ଥର ସଭୟେ କହିଲା—'ଭଲ କଥା, ତାହା କରାଯାଉ ।' ପରେ ହିରଣ୍ୟକ ଚିନ୍ତା କରି କହିଲା—'ପୁନର୍ବାର ଜଳାଶୟ ପାଇଲେ, ମନ୍ଥରର ମଙ୍ଗଳ ସତ୍ୟ, କିନ୍ତୁ ସ୍ଥଳପଥରେ ଯାଉଁ ଯାଉଁ ଯଦି କୌଣସି ବିପଦ ଘଟେ, ତାହାହେଲେ ତାହାଙ୍କର ଗତି କଣ ହେବ ? କାରଣ—ଜଳଜନ୍ତୁମାନଙ୍କର ଜଳ, ଦୁର୍ଗବାସୀମାନଙ୍କର ଦୁର୍ଗ, ଶ୍ୱାପଦମାନଙ୍କର ସ୍ୱୀୟ ଆବାସଭୂମି ଏବଂ ରାଜାମାନଙ୍କର ମନ୍ତ୍ରୀହିଁ ପରମ ବଳ । ଅତଏବ ସଖେ ଲଘୁପତନକ ! ତୁମ୍ଭମାନଙ୍କର ଏହି ପରାମର୍ଶାନୁସାରେ ଚାଲିଲେ ଅବଶ୍ୟ ବିପଦ ଘଟିବ । କୌଶଳ ଦ୍ୱାରା ଯାହା ସାଧ୍ୟ, ତାହା ବିକ୍ରମଦ୍ୱାରା ସାଧ୍ୟ ହୁଏ ନାହିଁ । ଦେଖ, ଏକ ଶୃଗାଳ ବୁଦ୍ଧିବଳରେ ଗୋଟିଏ ହସ୍ତିର ମୃତ୍ୟୁ ଘଟାଇ ଥିଲା ।'

ସେମାନେ ପଚାରିଲେ—ତାହା କଣ ?

ହିରଣ୍ୟକ କହିଲା—

---

## ଶୃଗାଳ ଓ ହସ୍ତୀ

ବ୍ରହ୍ମାରଣ୍ୟରେ କର୍ପୂରତିଳକ ନାମକ ଏକ ହସ୍ତୀ ଥିଲା । ତାହାକୁ ଦେଖି ଶୃଗାଳମାନେ ଭାବୁଥାନ୍ତି, ଯଦି ଏହି ହସ୍ତୀକୁ

କୌଣସି ପ୍ରକାରେ ମରି ଯାଇ ପାରେ, ତେବେ ଏହାର ମାଂସରେ ଆମ୍ଭମାନଙ୍କର ଚାରି ମାସ ଖାଦ୍ୟରୂପେ ଭୋଜନ ଚଳିବ । ଅନନ୍ତର, ସେମାନଙ୍କ ମଧ୍ୟରୁ ଏକ ବୃଦ୍ଧ ଶୃଗାଳ ଏହି ପ୍ରତିଜ୍ଞା କଲା—'ମୁଁ ବୁଦ୍ଧି କୌଶଳରେ ଏହାର ମୃତ୍ୟୁ ଘଟାଇବି ।' ତତ୍ପରେ ସେହି ଧୂର୍ତ୍ତ ଶୃଗାଳ, କର୍ପୂରତିଳକ ନିକଟକୁ ଯାଇ ସାଷ୍ଟାଙ୍ଗ ପ୍ରଣାମ କରି କହିଲା—'ମହାରାଜ ! ମୋ ପ୍ରତି ଥରେ କୃପାଦୃଷ୍ଟି ନିକ୍ଷେପ କରନ୍ତୁ ।' ହସ୍ତୀ କହିଲା—'କିଏ ହେ ତୁମ୍ଭେ ? କେଉଁଠାରୁ ଆସିଅଛ ?' ସେ କହିଲା—'ମୁଁ ଶୃଗାଳ, ବନର ସକଳ ପଶୁ ମିଳି ମୋତେ ଆପଣଙ୍କ ନିକଟକୁ ପ୍ରେରଣ କରିଅଛନ୍ତି । ରାଜା ବ୍ୟତିରେକେ ଆମ୍ଭମାନଙ୍କର ଏହି ସ୍ଥାନରେ ରହିବା ଉଚିତ ନୁହେ । ଆପଣ ସମସ୍ତ ରାଜଗୁଣରେ ଅଳଙ୍କୃତ ହୋଇଅଛନ୍ତି । ସୁତରାଂ ଆମ୍ଭେମାନେ ଆପଣଙ୍କୁହିଁ ଏହି ଅରଣ୍ୟରାଜ୍ୟରେ ଅଭିଷେକ୍ତ କରିବାର ସ୍ଥିର କରିଅଛୁଁ । କାରଣ—ସେ କୌଳିକ ଓ ଲୌକିକ ଆଚାର ପ୍ରତିପାଳନଦ୍ୱାରା ଅତି ପବିତ୍ର, ପ୍ରତାପଶାଳୀ, ଧାର୍ମିକ ଏବଂ ସୁନୀତି-କୁଶଳ, ସେ ପୃଥିବୀରେ ସ୍ୱାମୀ ପଦରେ ନିଯୁକ୍ତ ହୋଇଥାଏ । ପୁଣି ସର୍ବପ୍ରଥମରେ ରାଜାର ଆଶ୍ରୟ ନେବାକୁ ହୁଏ, ପରେ ଜାୟା ଓ ତତ୍ପରେ ଧନଲାଭ କରିବାକୁ ହୁଏ । ଏହି ଜଗତ ଅରାଜକ ହେଲେ ଜାୟା ଓ ଧନ କପରି ବା ରକ୍ଷିତ ହେବେ ? ରାଜା ମେଘପରି ଲୋକମାନଙ୍କର ଆଶ୍ରୟ । ମେଘ ବର୍ଷିତ ନ ହେଲେ ମଧ୍ୟ ପ୍ରାଣିସକଳ କୌଣସି ରୂପେ ବଞ୍ଚି ପାରନ୍ତି; କିନ୍ତୁ ରାଜା ନ ଥିଲେ କେହିହେଲେ ପ୍ରାଣ ଧାରଣ କରି ନ ପାରେ । ମନୁଷ୍ୟମାନେ ରାଜଶାସନ ଭୟରେ କର୍ତ୍ତବ୍ୟପରାୟଣ ହୁଅନ୍ତି । ସ୍ୱାଭାବିକ ସାଧୁସ୍ୱଭାବ ବ୍ୟକ୍ତି ସଂସାରରେ ଦୁର୍ଲ୍ଲଭ । କୁଳକାମିନୀ ମଧ୍ୟ ଦଣ୍ଡ ଭୟରେ ଦୁର୍ବଳ, ବିକଳ, ପୀଡ଼ିତ

---

ମହୌଷଧ ଜାଣିବ ସାଧୁର ସହବାସ,

ଏବଂ ଧରିତ୍ରୀ-ପତିର ସେବା କରୁଥାଏ । ସୁତରାଂ ମହାରାଜ ! ଅଭିଷେକର ଶୁଭଲଗ୍ନ ଅତୀତ ନହେଉଣୁ ଦ୍ରୁତପଦରେ ଆଗମନ କରନ୍ତୁ ।'

ଏହାକହି ଶୃଗାଳ ପ୍ରସ୍ଥାନର ଉପକ୍ରମ କଲା । ପରେ, କର୍ପୂର-ତିଳକ ରାଜ୍ୟଲୋଭରେ ଆକୃଷ୍ଟ ହୋଇ ଶୃଗାଳର ପ୍ରଦର୍ଶିତ ପଥରେ ଧାବିତ ହେବାକ୍ଷଣି ଗଭୀର ପଙ୍କ ମଧ୍ୟରେ ନିମଗ୍ନ ହେଲା । ହସ୍ତୀ କହିଲା—'ସଖେ ଶୃଗାଳ, ଏବେ କରିବି କଣ ? ମୁଁ ଦୁସ୍ତର ପଙ୍କରେ ପଡ଼ିଅଛି, ପ୍ରାଣଯିବା ଥରେ ଲେଉଟି ଦେଖ ।' ଶୃଗାଳ ହସି ହସି କହିଲା—'ପ୍ରଭୋ ! ମୋର ଲାଙ୍ଗୁଳ ଧରି ଉଠନ୍ତୁ । ଆପଣ ଯେ ମୋ ପରି ଜୀବର କଥାରେ ବିଶ୍ୱାସ ସ୍ଥାପନ କରିଅଛନ୍ତି, ଏହା ତାହାର ଫଳ । ସୁତରାଂ ବର୍ତ୍ତମାନ ଅପ୍ରତିବିଧେୟ ଦୁଃଖ ଅନୁଭବ କରନ୍ତୁ । ସାଧୁ ସହବାସରେ ଉନ୍ନତି ହୁଏ, କିନ୍ତୁ ଅସାଧୁ ଜନସମାଜରେ ମିଶିଲେ ପତନ ଘଟେ ।' ପରେ ଶୃଗାଳମାନେ ସେହି ମହାପଙ୍କରେ ନିମଗ୍ନ ହସ୍ତୀକୁ ଭକ୍ଷଣ କଲେ ।

ଏହି କାରଣରୁ ମୁଁ କହିଥିଲି ଯେ—ଉପାୟଦ୍ୱାରା ଯାହା ସାଧ୍ୟ, ତାହା ବଳଦ୍ୱାରା ଅସାଧ୍ୟ । ଶେଷରେ ତୁମ୍ଭମାନଙ୍କୁ ମଧ୍ୟ ସେପରି ପରିତାପ କରିବାକୁ ହେବ । କିନ୍ତୁ ମନ୍ଥର ହିରଣ୍ୟକର ସେହି ହିତବାକ୍ୟ ନ ଶୁଣି, ଭୟରେ ଏକାନ୍ତ ବିହ୍ୱଳ ହୋଇ ସେହି ଜଳାଶୟ ପରିତ୍ୟାଗପୂର୍ବକ ପ୍ରସ୍ଥାନ କଲା । ହିରଣ୍ୟକ ପ୍ରଭୃତି ବନ୍ଧୁମାନେ ମଧ୍ୟ ମନ୍ଥର ପ୍ରତି ସ୍ନେହପ୍ରଯୁକ୍ତ ଅନିଷ୍ଟ ଆଶଙ୍କା କରି ତାହାର ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ମନ୍ଥର ସ୍ଥଳପଥରେ ଯାଉଅଛି, ଏପରି ସମୟରେ ଏକ ବ୍ୟାଧ ବନ ମଧ୍ୟରେ ଭ୍ରମଣ କରୁ କରୁ

ତାହାକୁ ଦେଖିଲା । ବ୍ୟାଧ ତାହାକୁ ଭୂମିରୁ ଉଠାଇ ନେଇ ଧନୁକରେ ବନ୍ଧନ କରି କହିଲା—'ବାଃ, ମୋ ପରିଶ୍ରମ ସଫଳ-ହେଲା ।' ଏହା କହି ଗୃହାଭିମୁଖରେ ପ୍ରସ୍ଥାନ କଲା । ତାହା ଦେଖି ବାୟସ, ମୂଷିକ ଓ ମୃଗ ଗଭୀର ବିଷାଦରେ ବ୍ୟାଧର ପଶ୍ଚାତ୍ ପଶ୍ଚାତ୍ ଗମନ କଲେ । ଅତଃପର ହିରଣ୍ୟକ ଏପରି ବିଳାପ କରିବାକୁ ଲାଗିଲା—

ଗୋଟିଏ ଦୁଃଖର ଶେଷ ସୀମାକୁ ନ ଯାଉଣୁ, ଅନ୍ୟ ଏକ ଦୁଃଖ ଆସି ଉପସ୍ଥିତ ହେଲା । ଅନର୍ଥସକଳ ଛିଦ୍ର ପାଇଲେ ବହୁତ ପ୍ରାପ୍ତ ହୋଇଥାଏ । ସୌଭାଗ୍ୟବଳରୁ ସ୍ୱଭାବଜ ମିତ୍ରଲାଭ ଘଟିଥାଏ ଏବଂ ସେହି ମିତ୍ର ବିପଦ ଘଟିଲେ ସୁଦ୍ଧା ପରିତ୍ୟାଗ କରି ଯାଏ ନାହିଁ । ମାନବଗଣଙ୍କର ଅକୃତ୍ରିମ ବନ୍ଧୁ ପ୍ରତି ଯେପରି ବିଶ୍ୱାସ ହୁଏ—ନ ମାତା, ନ ପିତା, ନ ଭ୍ରାତା, ନ ସ୍ତ୍ରୀ, ନ ପୁତ୍ର କାହା ପ୍ରତି ହେଲେ ସେପରି ବିଶ୍ୱାସ ହୁଏ ନାହିଁ ।

ଏହିପରି ପୁନଃ ପୁନଃ ଚିନ୍ତା କରି ହିରଣ୍ୟକ କହିଲା—"ଆହା ! ମୋର କି ଦୁରଦୃଷ୍ଟ ! ମନୁଷ୍ୟମାନେ ଇହଜନ୍ମର କର୍ମଫଳ ପରଜନ୍ମରେ ଭୋଗ କରୁଥାନ୍ତି; କିନ୍ତୁ ମୋ ପକ୍ଷରେ ତାହାର ବିପରୀତ ଘଟିଅଛି । ନିଜର କର୍ମଫଳ ମୁଁ ଇହଜନ୍ମରେ ହିଁ ପ୍ରାପ୍ତହେଲି । ଅଥବା ସଂସାରର ଗତି ହିଁ ଏହା—ଶରୀରର ବିନାଶ ଅଛି; ସମ୍ପଦ ଆପଦର ଆସ୍ପଦ, ମିଳନ ସଙ୍ଗେ ସଙ୍ଗେ ବିଚ୍ଛେଦ ବିଦ୍ୟମାନ, ଏପରି ଯାବତୀୟ ସୃଷ୍ଟି ପଦାର୍ଥ ଧ୍ୱଂସଶୀଳ ।"

ପୁନର୍ବାର ଭାବି ଭାବି କହିଲା—"ଶୋକ, ଶତ୍ରୁ ଓ ଭୟର ଉଚ୍ଛେଦକର ପ୍ରୀତି ଓ ବିଶ୍ୱାସର ଆକାର 'ମିତ୍ର'—ଏହି ଅକ୍ଷର

---

ଅମୃତ ବିନସ୍ଥ ବଚନ,

ଦୁଇଟିର କିଏ ସୃଷ୍ଟି କଲା ? ଯେ ଚକ୍ଷୁର ସ୍ନିଗ୍ଧ ରସାଞ୍ଜନ ସ୍ୱରୂପ, ଯେ ଚିତ୍ତରେ ଆନନ୍ଦ ଜନ୍ମାଏ ଏବଂ ଯେ ସୁଖ ଦୁଃଖର ସମାନ ପାତ୍ର, ସେପରି ମିତ୍ର ପୁଣ୍ୟବାନ୍ ବ୍ୟକ୍ତିହିଁ ଲାଭ କରିଥାଏ । ସମ୍ପଦ ସମୟରେ ମନୁଷ୍ୟର ଅନେକ ସ୍ୱାର୍ଥପର ମିତ୍ର ହୁଅନ୍ତି । ବିପଦ ସମୟରେ ସେମାନେ କିପରି ମିତ୍ର ତାହା ସ୍ପଷ୍ଟ ଜଣାଯାଏ । ବିପଦହିଁ ସେମାନଙ୍କ ପରୀକ୍ଷାର୍ଥ ନିକଷ-ପାଷାଣ ସ୍ୱରୂପ ।”

ଏହାପରେ ବନ୍ଧୁ ବିଳାପକରି ହିରଣ୍ୟକ ଚିତ୍ରାଙ୍ଗ ଓ ଲଘୁପତନକଙ୍କୁ କହିଲା—‘ଏହି ବ୍ୟାଧ ବନରୁ ବହିର୍ଗତ ହେବା ପର୍ଯ୍ୟନ୍ତ ମନ୍ଥରକୁ ତାହା ହସ୍ତରୁ ମୁକ୍ତ କରିବା ନିମିତ୍ତ ଯତ୍ନ କର ।’ ସେ ଦୁଇଜଣ ଉତ୍ତର କଲେ,—‘କଣ କରିବାକୁ ହେବ, ଶୀଘ୍ର ଉପଦେଶ ଦିଅ ।’ ହିରଣ୍ୟକ କହିଲା, “ଚିତ୍ରାଙ୍ଗ ଜଳ ସମୀପକୁ ଯାଇ ମୃତବତ୍ ନିସ୍ପନ୍ଦଭାବରେ ପଡ଼ି ରହନ୍ତୁ ଏବଂ ଲଘୁପତନକ ତାହାଙ୍କ ଉପରେ ବସି ଚଞ୍ଚୁରେ ଖୁମ୍ପିବାକୁ ଛଳ କରନ୍ତୁ । ତାହାହେଲେ ବ୍ୟାଧ ନିଶ୍ଚୟ ମୃଗମାଂସ ଲୋଭରେ ମନ୍ଥରକୁ ଛାଡ଼ିଦେଇ ସତ୍ୱର ସେଠାକୁ ଯିବ । ମୁଁ ଏହି ଅବସରରେ ମନ୍ଥରଙ୍କ ବନ୍ଧନ ଛେଦନ କରିଦେବି । ବ୍ୟାଧ (ତୁମ୍ଭମାନଙ୍କ) ନିକଟକୁ ଆସିଲେ ତୁମ୍ଭେ ଦୁଇଜଣ ପଳାୟନ କରିବ ।”

ଅନନ୍ତର ଚିତ୍ରାଙ୍ଗ ଓ ଲଘୁପତନକ ଶୀଘ୍ର ଯାଇ ଠିକ୍ ସେପରି କଲେ; ସେହି ବ୍ୟାଧ ପରିଶ୍ରାନ୍ତ ହୋଇ ଜଳପାନ ପୂର୍ବକ ବୃକ୍ଷମୂଳରେ ଉପବେଶନକଲା । ମୃଗକୁ ସେହି ଅବସ୍ଥାରେ ପଡ଼ିବାର ଦେଖି କୂର୍ମକୁ ଜଳ ସମୀପରେ ରଖିଦେଲା ଏବଂ ଛୁରୀ ଖଣ୍ଡିଏ ଧରି ଆନନ୍ଦିତ ମନରେ ମୃଗ ନିକଟକୁ ଗଲା । ଇତ୍ୟବସରରେ ହିରଣ୍ୟକ ଆସି ବନ୍ଧନ ଛେଦନ କରିବାରୁ କୂର୍ମ

କିଏ ତୋଷିବ ପ୍ରାଣୀ ମନ ।

ଚକ୍ଷଣାତ୍ ଜଳ ମଧ୍ୟରେ ପ୍ରବେଶ କଲା । ମୃଗ ମଧ୍ୟ ବ୍ୟାଧକୁ ନିକଟବର୍ତ୍ତୀ ହେବାର ଦେଖି ସେଠାରୁ ଉଠି ଦ୍ରୁତପଦରେ ପଳାୟନ କଲା । ବ୍ୟାଧ ବୃକ୍ଷମୂଳକୁ ବାହୁଡ଼ି ଆସି ଦେଖିଲା ଯେ, କଚ୍ଛପ ମଧ୍ୟ ସେଠାରେ ନାହିଁ । ସେତେବେଳେ ସେ ଭାବିଲା—ଏହା ମୋର ଅବିମୃଶ୍ୟକାରିତାର ଉପଯୁକ୍ତ ଫଳ । କାରଣ—ଯେଉଁ ଲୋକ ନିଶ୍ଚିତ ବିଷୟ ପରିତ୍ୟାଗ କରି ଅନିଶ୍ଚିତ ବସ୍ତୁ ପାଇବାକୁ ଚେଷ୍ଟା କରେ, ତାହାର ଅନିଶ୍ଚିତ ବିଷୟ ତ ବିଫଳ ହୁଏ, ପରନ୍ତୁ ନିଶ୍ଚିତ ବସ୍ତୁ ମଧ୍ୟ ନଷ୍ଟ ହୋଇଥାଏ ।

ଅନନ୍ତର ସେହି ବ୍ୟାଧ ହତାଶ ହୋଇ ଶିବିରରେ ପ୍ରବେଶ କଲା । ମନ୍ଥର ପ୍ରଭୃତି ବନ୍ଧୁଗଣ ସକଳ ବିପଦରୁ ମୁକ୍ତ ହୋଇ ପରମ ସୁଖରେ ବାସ କରିବାକୁ ଲାଗିଲେ ।

ଅତଃପର ରାଜପୁତ୍ରଗଣ ପରମ ଆନନ୍ଦରେ କହିଲେ—ଗୁରୁଦେବ ! ଆମ୍ଭେମାନେ ସମସ୍ତ କଥା ଶୁଣି ଅତ୍ୟନ୍ତ ସୁଖୀ ହେଲୁଁ । ଆମ୍ଭମାନଙ୍କର ମନୋରଥ ସିଦ୍ଧ ହୋଇଅଛି । ବିଷ୍ଣୁଶର୍ମା କହିଲେ—ଆନନ୍ଦର ବିଷୟ, ତୁମ୍ଭମାନଙ୍କର ମନୋରଥ ସଫଳ ହୋଇଅଛି ପୁଣି ଏହା ମଧ୍ୟ ହେଉ—

ସଦାଶୟ ବ୍ୟକ୍ତିଗଣ ସୁହୃତ୍‌ସଙ୍ଗ ଲାଭ କରନ୍ତୁ । ପ୍ରଜାଗଣ ସମ୍ପତ୍ତିଶାଳୀ ହୁଅନ୍ତୁ । ରାଜାଗଣ ସତତ ସ୍ୱଧର୍ମରେ ଆସକ୍ତ ହୋଇ ପୃଥିବୀ ପାଳନ କରନ୍ତୁ । ମତ୍‌ପ୍ରଣୀତ ନୀତିଗ୍ରନ୍ଥ ସୌଭାଗ୍ୟ ସମ୍ପନ୍ନ ପଣ୍ଡିତମାନଙ୍କର ମନୋରଞ୍ଜନ କରୁ । ଭଗବାନ ଶଶିଶେଖର ଜୀବଗଣଙ୍କ ମଙ୍ଗଳ ସାଧନ କରନ୍ତୁ । ଇତି ।

——8*8——

# ଦ୍ୱିତୀୟ ଭାଗ

## — ସୁହୃତ୍‌ଭେଦ —

ପଣ୍ଡିତ ଶ୍ରୀ ବିଷ୍ଣୁଶର୍ମା 'ମିତ୍ରଲାଭ' ବୁଝାଇବା ପରେ ରାଜକୁମାର-ମାନେ କହିଲେ, "ଆର୍ଯ୍ୟ, ଆମ୍ଭେମାନେ 'ମିତ୍ରଲାଭ' ଶୁଣିଲୁଁ, ବର୍ତ୍ତମାନ 'ସୁହୃଦ୍‌ଭେଦ' ଶୁଣିବାକୁ ଇଚ୍ଛାକରୁଁ ।"

ବିଷ୍ଣୁଶର୍ମା କହିଲେ 'ତୁମ୍ଭେମାନେ 'ସୁହୃଦ୍‌ଭେଦ' ଶୁଣିବାକୁ ଇଚ୍ଛା ପ୍ରକାଶ କରିବା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ ଓ ଆଶାନ୍ୱିତ । ବର୍ତ୍ତମାନ ତାହା ଆରମ୍ଭ କରୁଅଛି, ନିବିଷ୍ଟ ଚିତ୍ତରେ ଶ୍ରବଣ କର । ତାହାର ପ୍ରଥମ ଶ୍ଳୋକର ଭାବ—କୌଣସି ଏକ ବନରେ ଏକ ସିଂହ ଏବଂ ଏକ ବଳଦ ପରମ ସୁଖରେ ବାସ କରୁଥିଲେ । ସେମାନଙ୍କର ପରସ୍ପର ସ୍ନେହ ଦିନକୁ ଦିନ ବୃଦ୍ଧି ପାଉଥିଲା । ଦିନେ ଏକ ଲୋଭୀ ଓ ଧୂର୍ତ୍ତ ଶୃଗାଳ ସେଠାକୁ ଯାଇ ସେ ଦୁହିଙ୍କର ପରସ୍ପର ପ୍ରଣୟ ନଷ୍ଟ କଲା ।

ରାଜପୁତ୍ରମାନେ ପ୍ରଶ୍ନ କଲେ, "ଗୁରୋ ! ତାହା କପରି ଘଟିଥିଲା ?" ବିଷ୍ଣୁଶର୍ମା କହିଲେ —

# ବଳଦ, ସିଂହ ଓ ଶୃଗାଳର କଥାରମ୍ଭ

ଦକ୍ଷିଣ ଦେଶରେ ସୁବର୍ଣ୍ଣବତୀ ବୋଲି ଏକ ନଗରୀ ଅଛି । ସେଠାରେ ବର୍ଦ୍ଧମାନ ନାମକ ଜଣେ ଧନୀ ବଣିକ ବାସ କରୁଥିଲା । ସେ ଅତି ଧନବାନ୍ ହେଲେ ହେଁ, ଆପଣାର ଆତ୍ମୀୟମାନଙ୍କୁ ଅଧିକତର ଧନବାନ୍ ଦେଖି ନିଜର ସମ୍ପତ୍ତି ଆହୁରି ବଢ଼ାଇବାକୁ ଇଚ୍ଛାକଲା, କାରଣ—ଉଚ୍ଚପଦ ଓ ଉନ୍ନତ ଅବସ୍ଥାର ବ୍ୟକ୍ତିକୁ ଦେଖି ମନୁଷ୍ୟ ନିଜକୁ ଶ୍ରେଷ୍ଠ ବୋଲି ମନେ କରେ; ଏବଂ ନିଜ ଅପେକ୍ଷା ମନ୍ଦ ଅବସ୍ଥାର ଲୋକକୁ ଦେଖି ସେ ଆପଣାକୁ ବଡ଼ ଜ୍ଞାନ କରେ । ଦେଖ, ଯେଉଁ ବ୍ୟକ୍ତି ବିପୁଳ ବିଭବର ଅଧିକାରୀ, ସେ ବ୍ରହ୍ମହତ୍ୟା କଲେ ସୁଦ୍ଧା ସମ୍ମାନ ପାଇଥାଏ । ଚନ୍ଦ୍ରତୁଲ୍ୟ ବଂଶରେ ଜନ୍ମଗ୍ରହଣ କରିଥିଲେହେଁ ସେ ଯଦି ଦରିଦ୍ର, ତାହାହେଲେ ତାହାକୁ ପଚାରେ କିଏ, ମାନେ ବା କିଏ ? ଯେପରି ବଳବୀର୍ଯ୍ୟରହିତ ରାଜା ପ୍ରତି ପୃଥିବୀ ଆସକ୍ତ ନୁହେଁ; ସେପରି ଅଳସ, ସାହସହୀନ, ଦୈବପରବଶ ଓ ଉଦ୍‌ଯୋଗବିହୀନ ବ୍ୟକ୍ତି ପ୍ରତି ଲକ୍ଷ୍ମୀ କଦାପି ଅନୁରକ୍ତ ହୁଏ ନାହିଁ ।

ଅତିଶୟ ଲୋଭ ଅତିରିକ୍ତ ଇନ୍ଦ୍ରିୟ-ସମ୍ଭୋଗ, ଜନ୍ମଭୂମି-ମାୟା, ଆଳସ୍ୟ, ଭୀରୁତା, ସନ୍ତୋଷ ଓ ବ୍ୟାଧି—ଏହି ସାତଗୋଟି ଦୋଷ ମହତ୍ତ୍ୱର ପ୍ରଧାନ ଅନ୍ତରାୟ । ଅଳ୍ପ ସମ୍ପତ୍ତି ଲାଭରେ ଯେ ନିଜକୁ ପରମସୁଖୀ ଜ୍ଞାନ କରି ଆପଣାର ଆଉ ଉନ୍ନତି ଚେଷ୍ଟା କରେନାହିଁ, ତାହାର ଅବସ୍ଥାର ଅଧିକ ଉତ୍କର୍ଷ ପ୍ରତି ବିଧାତା ଏକାବେଳକେ ଉଦାସୀନ ରହେ—କାରଣ, ସେ ଭାବେ ଯେ, ଏପରି ଲୋକ ପ୍ରତି ନିଜର କର୍ତ୍ତବ୍ୟ ସମ୍ପନ୍ନ ହୋଇ ଯାଇଅଛି । ଯାହାର ହୃଦୟରେ

---

ବିପୁଳ ବିଭବ ଯାର ଥାଏ ବିଦ୍ୟମାନ,

ସାହସ ନାହିଁ ପୁଣି ମନରେ ଆନନ୍ଦ ଓ ଉତ୍ସାହ କେବେ ସ୍ଥାନ ପାଏନାହିଁ, ସେ ସର୍ବଦା ଶତ୍ରୁର ଆନନ୍ଦବର୍ଦ୍ଧନ କରିଥାଏ ମାତ୍ର । ସ୍ତ୍ରୀ ଏପରି ସନ୍ତାନକୁ ନିଜ ଗର୍ଭରେ କେବେ ସ୍ଥାନ ନ ଦେଉ !

କଥିତ ଅଛି,—ଅଲବ୍‌ଧ ଧନ ଲାଭ କରିବାକୁ ବିଶେଷ ଯତ୍ନବାନ୍ ହେବା ଉଚିତ; କାରଣ, ଅଲବ୍‌ଧ ବସ୍ତୁର ପ୍ରାପ୍ତି-ଆଶାରେ ଯଦି ଯତ୍ନ କରା ନ ଯାଏ, ତାହାହେଲେ କୌଣସି ଅର୍ଥଲାଭ ହୁଏ ନାହିଁ, ଏବଂ ଲବ୍‌ଧ ଧନ ଅତି ସାବଧାନତା ସହିତ ରକ୍ଷା କରିବା ବିଧେୟ; ଯେହେତୁ ଲବ୍‌ଧାର୍ଥ ଅତି ଯତ୍ନରେ ସୁରକ୍ଷିତ କରା ନ ଗଲେ ଅମୂଲ୍ୟ ନିଧି ସୁଦ୍ଧା ବିନଷ୍ଟ ହୁଏ । ସୁରକ୍ଷିତ ଧନ ସାଧ୍ୟାନୁସାରେ ବୃଦ୍ଧି କରିବା ଶ୍ରେୟସ୍କର । ଲବ୍‌ଧ-ଅର୍ଥ ନ ବଢ଼ାଇଲେ ତାହା ଅଞ୍ଜନ ତୁଲ୍ୟ ଅଳ୍ପ ବ୍ୟୟରେ ସୁଦ୍ଧା କ୍ରମେ କ୍ଷୟପ୍ରାପ୍ତ ହୋଇଯାଏ । ଏପରି ବର୍ଦ୍ଧିତ ଅର୍ଥ ସତ୍‌ପାତ୍ରରେ ଅର୍ପଣ କରିବା ବାଞ୍ଛନୀୟ । କାରଣ ଅର୍ଥ ଉପଭୁକ୍ତ ନ ହେଲେ ତାହା ରହିବା ବୃଥା ।

ଯାହାର ଶରୀରରେ ବଳ ଅଛି, କିନ୍ତୁ ଶତ୍ରୁ ଜୟ କରିବାର ସାହସ ନାହିଁ, ଶାସ୍ତ୍ରଜ୍ଞାନ ଅଛି, କିନ୍ତୁ ଧର୍ମାଚରଣ ନାହିଁ; ଆତ୍ମା ଅଛି, କିନ୍ତୁ ଇନ୍ଦ୍ରିୟସଂଯମ ନାହିଁ, ଧନ ଅଛି, କିନ୍ତୁ ଦାନଭୋଗ ନାହିଁ— ତାହାର ସେହି ବଳ, ସେହି ଜ୍ଞାନ, ସେହି ଆତ୍ମା ଏବଂ ସେହି ଧନ ଥିବା ବିଡ଼ମ୍ବନା ମାତ୍ର ।

"ଅଞ୍ଜନର ରେଖା ଦେଖ ! କ୍ରମେ କ୍ଷୟ ପାଏ,
ଉଇମାଟି ବଢ଼େ ତେତେ ଧନ ଯେତେ ଯାଏ;
ଦେଖି ଏହା ଧନ କେବେ ବୃଥା ନ ହରିବ,
କର୍ମ-ଦାନ-ଅଧ୍ୟୟନେ ସାର୍ଥକ କରିବ ।"

---

ବ୍ରହ୍ମହତ୍ୟା କଲେ ସୁଦ୍ଧା ପାଏ ସେ ସମ୍ମାନ

କାରଣ—ଯେପରି ଜଳବିନ୍ଦୁ ଘଟ ଭିତରେ ପଡ଼ି ତାହା କ୍ରମେ ପୂର୍ଣ୍ଣ କରେ, ସେପରି ପ୍ରତିଦିନ ସଞ୍ଚିତ ହେଲେ ବିଦ୍ୟା, ଧର୍ମ ଓ ଧନ ଉତ୍ତରୋତ୍ତର ପୂର୍ଣ୍ଣତା ପ୍ରାପ୍ତ ହୁଏ । ଦାନ ଓ ଭୋଗ ବ୍ୟତୀତ ଦିନ ଯାପନ କରେ ଏପରି ଲୋକ କର୍ମକାରର ଭସ୍ତ୍ରା ପରି, ନିଶ୍ୱାସ ଥିଲେ ସୁଦ୍ଧା ନିର୍ଜୀବ ।

ଏହିପରି ଚିନ୍ତାକରି ବର୍ଦ୍ଧମାନ ନନ୍ଦକ ଓ ସଞ୍ଜୀବକ ନାମକ ଦୁଇ ବଳଦ ଶକଟରେ ଯୋଜନା କଲା ପୁଣି ବିବିଧ ପଣ୍ୟଦ୍ରବ୍ୟରେ ଶକଟଟି ପରିପୂର୍ଣ୍ଣ କରି ବାଣିଜ୍ୟ ଉଦ୍ଦେଶ୍ୟରେ କାଶ୍ମୀର ଦେଶାଭିମୁଖରେ ଯାତ୍ରା କଲା । କାରଣ, ବଳିଷ୍ଠ ଲୋକ ନିକଟରେ ଭାର ଅତି ତୁଚ୍ଛ; ବ୍ୟବସାୟୀ ଦୂରଦେଶକୁ ଯିବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଏ ନାହିଁ । ବିଦ୍ୱାନ୍ ବ୍ୟକ୍ତିର ବିଦେଶ କାହିଁ ? ଏବଂ ଯେ ସର୍ବଦା ପ୍ରିୟକଥା କହେ, ତାହାର ଶତ୍ରୁ ବା କିଏ ?

ଯାଉଁ ଯାଉଁ କିଛିଦିନପରେ ବର୍ଦ୍ଧମାନ ଦୁର୍ଗ ନାମକ ମହାରଣ୍ୟରେ ପ୍ରବିଷ୍ଟ ହେଲା । ସେଠାରେ ତାହାର ସଞ୍ଜୀବନାମା ବଳଦ ଦୈବାତ୍ ଭଗ୍ନଜାନୁ ହୋଇ ପତିତ ହେଲା । ଏହି ଦୁର୍ଘଟନା ଦେଖି ବର୍ଦ୍ଧମାନ ଭାବିଲା;—ବିଜ୍ଞବ୍ୟକ୍ତି ନିଜର ଉନ୍ନତି କଳ୍ପେ ଶତଚେଷ୍ଟା କରି ଇତସ୍ତତଃ ବୁଲେ, କିନ୍ତୁ ବିଧିବିଧାନ ଅନୁସାରେ ହିଁ ଫଳ ଘଟେ । ବିପଦରେ ଭୀତ ଓ ଚକିତ ହେବା ଭୀରୁର ବିଷୟ । ବସ୍ତୁତ ସକଳ କାର୍ଯ୍ୟରେ ଯେ ବ୍ୟାଘାତ ହୁଏ, ତହିଁରେ ଅଣୁମାତ୍ର ସଂଶୟ ନାହିଁ ! ଅତଏବ ବିଜ୍ଞ ବ୍ୟକ୍ତିକୁ ବିପଦବେଳେ ବିନ୍ଦୁମାତ୍ର ବିସ୍ମିତ ନ ହୋଇ ସାଧ୍ୟମତେ ନିଜକାର୍ଯ୍ୟ ସାଧନ କରିବାକୁ ହେବ ।

---

ଚନ୍ଦନ ସଦୃଶ ବଂଶେ ହେଲେ ହେଁ ଉଦ୍ଭବ,

ଏହା ସ୍ଥିରକରି ବର୍ଦ୍ଧମାନ ସଞ୍ଜୀବକକୁ ସେଠାରେ ପରିତ୍ୟାଗ ପୂର୍ବକ ଧର୍ମପୁର ନାମକ ନଗରକୁ ଯାଇ ଅନ୍ୟ ଏକ ବୃହତ୍କାୟ ବଳୀବର୍ଦ୍ଦ କ୍ରୟ କରି ଆଣିଲା; ଏବଂ ତାହାକୁ ଶକଟରେ ଯୋଗକରି ସେହି ସ୍ଥାନରୁ ପ୍ରସ୍ଥାନ କଲା ।

ତତ୍ପରଦିନରେ ସଞ୍ଜୀବକ 'କଷ୍ଟେ ମଷ୍ଟେ' ତିନ ଖୁରରେ ଭରା ଦେଇ ଉଠି ଠିଆ ହେଲା । ଦେଖ, ଅତଳ ସାଗର ଜଳରେ ନିମଗ୍ନ ହେଲେ ହେଁ, ପର୍ବତଶିଖରରୁ ପତିତ ପୁଣି ଭୟଙ୍କର ସର୍ପଦ୍ୱାରା ଦଂଷ୍ଟ୍ର ହେଲେ ସୁଦ୍ଧା, ପରମାୟୁ ଥିଲେ ଜୀବ କଦାପି ମୃତ୍ୟୁମୁଖରେ ପତିତ ହୁଏନାହିଁ । ପରମାୟୁ ଶେଷ ନ ହେଲେ ପ୍ରାଣୀ ଶତଶତ ଶରରେ ବିଦ୍ଧ ହୋଇ ସୁଦ୍ଧା ମରେନାହିଁ, ଏବଂ କାଳପ୍ରାପ୍ତ ହେଲେ କୁଶାଗ୍ରର ସାମାନ୍ୟ ସ୍ପର୍ଶରେ ମଧ୍ୟ ପ୍ରାଣ ତ୍ୟାଗ କରେ । "ହରି ରଖେ ମାରେ କିଏ, ହରି ମାରେ ରଖେ କିଏ ?" ଅନାଥ ପରିତ୍ୟକ୍ତ ବ୍ୟକ୍ତି ଅରଣ୍ୟରେ ପଡ଼ିରହି ମଧ୍ୟ ପ୍ରାଣଧାରଣ କରେ ଏବଂ ମନୁଷ୍ୟ ଅତିଶୟ ସାବଧାନତା ସତ୍ତ୍ୱେ ଗୃହରେ ପ୍ରାଣତ୍ୟାଗ କରିଥାଏ ।

କିଛିଦିନ ପରେ ସଞ୍ଜୀବକ ସେହି ମହାବନରେ ବିଚରଣ-ପୂର୍ବକ ସ୍ୱେଚ୍ଛାମତେ ଆହାରାଦି କରି କ୍ରମଶଃ ହୃଷ୍ଟପୁଷ୍ଟ ହେଲା ଏବଂ ପୂର୍ବପରି ଶବ୍ଦ କରିବାକୁ ସମର୍ଥ ହେଲା । ସେହି ଅରଣ୍ୟରେ ପିଙ୍ଗଳକ ନାମରେ ଏକ ସିଂହ ବାସକରୁଥିଲା । ସେ ନିଜ ପରାକ୍ରମ ବଳରେ ସେହି ବନରେ ରାଜା ହୋଇ ପରମସୁଖରେ କାଳଯାପନ କରୁଥିଲା । କଥିତ ଅଛି ଯେ—ବନର ପଶୁମାନେ ବିଧି ଅନୁସାରେ ଅଭିଷେକ କରି ସିଂହକୁ କେବେ ରାଜସିଂହାସନରେ ବସାନ୍ତି ନାହିଁ; କିନ୍ତୁ ସିଂହ ନିଜ ତେଜ ଓ ବିକ୍ରମବଳରେ ପଶୁମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିଥାଏ ।

---

ମାନେ କିଏ ଯନ୍ଧ ତାର ନଥାଏ ବିଭବ ।

ଦିନେ ସେହି ସିଂହ ତୃଷାର୍ତ୍ତ ହୋଇ ଜଳ ପାନକରିବା ଉଦ୍ଦେଶ୍ୟରେ ଯମୁନା ନଦୀ ତଟକୁ ଗଲା । ସେ ସେଠାରେ ପ୍ରଳୟ-ମେଘ-ଗର୍ଜ୍ଜନ ତୁଲ୍ୟ ସେହି ସଞ୍ଜୀବକର ନାଦ ଶୁଣିଲା । ସେ ସେହି ଅଶ୍ରୁତପୂର୍ବ ଘେ ଶ୍ରବଣରେ ଅତ୍ୟନ୍ତ ସନ୍ତ୍ରସ୍ତ ଓ ବିସ୍ମିତ ହୋଇ ଜଳ ପାନ ନ କରି ସେହି ସ୍ଥାନରୁ ବାହୁଡ଼ି ଆସିଲା ।" ସ୍ୱ ସ୍ଥାନରେ ଉପସ୍ଥିତ ହୋଇ ଭାବିଲା, "ଏ କି ବ୍ୟାପାର ! କ୍ଷଣକାଳ ଏହା ଚିନ୍ତା କରି ନୀରବ ରହିଲା । ତାହାର ମନ୍ତ୍ରୀ-ପୁତ୍ର କରଟକ ଓ ଦମନକ ନାମରେ ଦୁଇ ଶୃଗାଳ ତାହାକୁ ସେହି ଅବସ୍ଥାରେ ଦେଖି ଯତ୍ପରୋନାସ୍ତି ବିସ୍ମିତ ହେଲେ ।

ସିଂହକୁ ତଦବସ୍ଥାରେ ଦେଖି ଦମନକ କରଟକକୁ କହିଲା, "ସଖେ କରଟକ ! ଏ କି ବିଚିତ୍ର ବ୍ୟାପାର ! ପ୍ରଭୁ ତୃଷା ନିବାରଣ କରିବା ସକାଶେ ଯମୁନା-ତୀରକୁ ଯାଇ ଜଳ ପାନ ନ କରି ସେଠାରୁ କି ହେତୁ ନିଃଶଙ୍କରେ ଫେରିଆସିଲେ !"

କରଟକ—ମିତ୍ର ଦମନକ ! ମୋ ମତରେ ଏପରି ପ୍ରଭୁର ସେବା କରିବା ଏକାନ୍ତ ଅନୁଚିତ । ତେବେ ଏହି କାର୍ଯ୍ୟର ଅନୁସନ୍ଧାନରେ ଫଳ ଅବା କଣ ? କାରଣ ଏହି ରାଜା ବହୁଦିନାବଧି ବିନାପରାଧରେ ଆମ୍ଭମାନଙ୍କ ପ୍ରତି ଅନାଦର ପ୍ରକାଶ କରି ଅଶେଷ ଯାତନା ଦେଇ ଆସୁଅଛି । ହାୟ ! ଯେଉଁ ମୂଢ଼ ବ୍ୟକ୍ତି ଧନଲୋଭରେ ପରର ଦାସତ୍ୱ ସ୍ୱୀକାର କରେ, ସେ ନିଜର ସ୍ୱାଧୀନତା ହରାଏ ସିନା ! ଦେଖ, ମନୁଷ୍ୟ ପରର ଦାସତ୍ୱ କରି ଝଡ଼, ଝଟିକା ଶୀତ ଓ ରୌଦ୍ରରେ ଯେତେ କ୍ଳେଶ ପାଏ, ତାହାର ଅର୍ଦ୍ଧାଂଶ ମାତ୍ର ତପଃ ସାଧନରେ ପାଇଲେ ସିଦ୍ଧିଲାଭ ହୁଏ ପୁଣି ଅନ୍ତରେ ସ୍ୱର୍ଗସୁଖ ମିଳେ

---

ଯେ ଜନ ଉଦ୍‌ଯୋଗହୀନ ସର୍ବଦା ଅଳସ,

ସ୍ୱାଧୀନତା ମନୁଷ୍ୟର ଗୋଟିଏ ଅମୂଲ୍ୟ ରତ୍ନ; ସୁତରାଂ ଯେଉଁ ଲୋକ ସ୍ୱାଧୀନ ତାହାର ଜନ୍ମ ସାର୍ଥକ । ପରାଧୀନ ବ୍ୟକ୍ତି ଯଦି ଜୀବିତ, ତେବେ ମୃତ କିଏ ? ପୁଣି ଆସ, ଯାଅ, ଧାଅଁ, ବସ, ଉଠ, ଭୁବିରହ—ଏହି ସମସ୍ତ ପଦରେ ସମ୍ବୋଧନ କରି ଧନିକଗଣ ଆଶ୍ରିତ ପ୍ରତି ସ୍ୱେଚ୍ଛାଚାର କରିଥାନ୍ତି । ହାୟ ! 'ଆଶାର କୁହୁକେ ହୁଏ ଏହି ପୁରସ୍କାର ।' ଅର୍ଥଲାଭାଶାରେ ଯେଉଁ ଲୋକ ନିଜକୁ ପରର ସେବାରେ ନିଯୁକ୍ତ କରେ, ସେ ଯେ ନିତାନ୍ତ ନିର୍ବୋଧ, ଏଥିରେ ସନ୍ଦେହ ବା କଣ ? ପରସେବା-ରତ ବ୍ୟକ୍ତି କଣ ଅବା ନ କରେ ? ସେ କ୍ରମେ ନିଜ ଦେହ ଓ ମନ କ୍ଷୀଣ କରି କ୍ରୀତଦାସ ତୁଲ୍ୟ ପ୍ରଭୁର ଆଦେଶ ପାଳନ କରେ ।

ପୁଣି ଦେଖ, ଯେଉଁ ଦୃଷ୍ଟି କ୍ଷଣକାଳ ସୁଦ୍ଧା ସ୍ଥିରଭାବରେ ରହେନାହିଁ ଏବଂ ଯାହା ଅଶୁଚି ପଦାର୍ଥ ଉପରେ ମଧ୍ୟ ପତିତ ହୁଏ, ପ୍ରଭୁ ଯଦି ସେହି ଦୃଷ୍ଟି ଭୃତ୍ୟ ପ୍ରତି ନିକ୍ଷେପ କରେ, ତାହାହେଲେ ଭୃତ୍ୟ ସେହି ଦୃଷ୍ଟିକୁ ପରମାର୍ଥ ଜ୍ଞାନକରି ଆଶ୍ୱସ୍ତ ରହେ । ବିଶେଷତଃ, ଯେ ନିଜର ଉନ୍ନତି କଲ୍ପେ ପରକୁ ପ୍ରଣାମ କରେ, ପରର ରକ୍ଷା ଓ ଲାଭ ସକାଶେ ଆପଣାର ଜୀବନ ଦିଏ ଏବଂ ନିଜେ ଦୁଃଖକଷ୍ଟ ସହିକରି ପରର ସୁଖ ଯୋଗାଏ, ସେ ତ ଅଭାଗା ନୁହେ, ସଂସାରରେ ଆଉ ଅଭାଗା କିଏ ? ଆହା ! "କେ ଅଛି ଅଭାଗା ଆଉ ଭୃତ୍ୟର ସମାନ ?" ପରସେବା ଯେ କଣ, ଯୋଗିମାନେ ସୁଦ୍ଧା ତାହାର ତତ୍ତ୍ୱ ଖୋଜି ପାଇ ପାରନ୍ତିନାହିଁ । କାରଣ, ପରାଧୀନ ଲୋକ ବଚନ ପ୍ରକାଶ କଲେ ମୂର୍ଖରୂପେ ଏବଂ ମୁଖ ଫିଟାଇଲେ ପାଗଳରୂପେ ଗଣ୍ୟ ହୁଏ । ସେ ଯଦି ଅପମାନ ସହ୍ୟକରେ, ଲୋକେ ତାହାକୁ

---

ଲକ୍ଷ୍ମୀ କେବେ ନ ଯାଆନ୍ତି ସେ ଲୋକର ବାସ ।

ଥିବୁ ବୋଲି କହିଥାନ୍ତି, ସେ ତାହା ଯଦି ସହ୍ୟ ନ କରେ, ତେବେ ତାହାକୁ ନୀଚ-ସନ୍ତାନ ବୋଲି ଭାବି, ଘୃଣା କରନ୍ତି । ନିକଟରେ ରହିଲେ ଧୃଷ୍ଟ ଏବଂ ଦୂରରେ ରହିଲେ ଅକର୍ମଣ୍ୟ ବୋଲି ଧରାଯାଏ । ହାୟ ! ପର-ସେବା କି କୁତ୍ସିତ କର୍ମ ! ପରାଧୀନତା କି ବିଷମ ବ୍ୟାପାର ! ଭୃତ୍ୟର ଦୁର୍ଦ୍ଦଶା କହିଲେ ନ ସରେ !

ଦମନକ—ବନ୍ଧୁବର ! ତୁମ୍ଭର ଏପରି କହିବା ଉଚିତ ହୋଇନାହିଁ, କାରଣ ଧନୀ କର୍ତ୍ତୃକ ପ୍ରସନ୍ନ ହେଲେ ସେବକର କାମନା ଅଚିରେ ପୂର୍ଣ୍ଣ ହୋଇଥାଏ, ସୁତରାଂ ଯତ୍ନ ସହକାରେ ଧନୀର ସେବା କରିବାରେ ଲଜ୍ଜା କରିବା ଉଚିତ ନାହିଁ । ଆଉ ରାଜସେବା ନ କଲେ ଗଜ, ବାଜି, ଛତ୍ର, ଦଣ୍ଡ, ଚାମର, ବୈଭବ—ଏହି ସକଳ ବିଷୟ ମିଳିପାରେ କି ?

କରଟକ—ତଥାପି ଅନର୍ଥକ ପରକାର୍ଯ୍ୟରେ ହସ୍ତକ୍ଷେପ କରିବା ଅନୁଚିତ । କୀଳକ ଉତ୍ପାଟନ କରି ଏକ ବାନର ଯେପରି ମୃତ୍ୟୁ ପ୍ରାପ୍ତ ହୋଇଥିଲା, ଅକାରଣରେ ପର ବିଷୟରେ ହାତ ଦେବା ଲୋକର ସେପରି ଦୁର୍ଗତି ହୁଏ ।

ଦମନକ—ତାହା କି ପ୍ରକାର ?

କରଟକ କହିଲା—

---

ଉତ୍ସାହ, ଆନନ୍ଦ, ସାର୍ଯ୍ୟ ନାହିଁ କିଛି ଯାର,

# କୀଲୋତ୍ପାଟକ ବାନର

ମଗଧ ଦେଶରେ ଧର୍ମାରଣ୍ୟ ନିକଟରେ ଶୁଭଦତ୍ତ ନାମକ ଜଣେ କାୟସ୍ଥ ଗୋଟିଏ କ୍ରୀଡ଼ା-ଭବନ ନିର୍ମାଣ କରାଉଥିଲା । କାଠ କରୁଥିବା ଲୋକମାନେ ସେହି ସ୍ଥାନରେ ଗୋଟିଏ କାଷ୍ଠର କେତେଦୂର ପର୍ଯ୍ୟନ୍ତ ଚିରି ତାହା ଫଟା କରି ରଖିବା ଉଦ୍ଦେଶ୍ୟରେ ତହିଁ ମଧ୍ୟରେ ଗୋଟିଏ କୀଳା ପେଲି ରଖିଥିଲେ । ବନରୁ ଦଳେ ବାନର ଖେଳିବା ସକାଶେ ସେହି ସ୍ଥାନକୁ ଆସିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ବାନର ସେହି କୀଳାଟି ଦୁଇ ହାତରେ ଧରି ବସିଲା । ତାହାର ଲାଙ୍ଗୁଳଟି ସେହି ଦୁଇଖଣ୍ଡି କାଠମଧ୍ୟରେ ଲମ୍ବି ପଡ଼ିଥିଲା । ଅନନ୍ତର ସେହି ବାନର ସ୍ୱଜାତିର ସ୍ୱଭାବ-ସୁଲଭ ଚପଳତାବଶତଃ, ପ୍ରାଣପଣ ଯତ୍ନରେ ସେହି କୀଳାଟି ଟଣାଟଣି କଲା । ସେ ସେହି କୀଳାଟି ଉପାଡ଼ିବାକ୍ଷଣି ତାହାର ଲାଙ୍ଗୁଳ ଦୁଇଫାଳ କାଷ୍ଠମଧ୍ୟରେ ଚିପିହୋଇ ରହି ଚୂର୍ଣ୍ଣ ହୋଇଗଲା । ବାନର ତତ୍କ୍ଷଣାତ୍ ପଞ୍ଚତ୍ୱପ୍ରାପ୍ତ ହେଲା । ଏଥିସକାଶେ ହିଁ ମୁଁ କହୁଥିଲି ଯେ, ଅନର୍ଥକ ପରର କାର୍ଯ୍ୟରେ ହାତଦେବା ଅବିଧେୟ ।

ଦମନକ—ତଥାପି ପ୍ରଭୁର କାର୍ଯ୍ୟ ନିରୂପଣ କରିବା ଭୃତ୍ୟର ଅବଶ୍ୟ କର୍ତ୍ତବ୍ୟ ।

କରଟକ—ପ୍ରଧାନ ମନ୍ତ୍ରୀଙ୍କ ହସ୍ତରେ ସମସ୍ତ ବିଷୟର ଭାର ଅଛି, ଅତଏବ ଏହି କାର୍ଯ୍ୟ ତାଙ୍କର; କିନ୍ତୁ ଆମ୍ଭମାନଙ୍କର ନୁହେ । କାରଣ ଭୃତ୍ୟର ଅନଧିକାର ଚର୍ଚ୍ଚା ଉଚିତ ନୁହେ । ଦେଖ, ଯେଉଁ ବ୍ୟକ୍ତି ପ୍ରଭୁର ହିତସାଧନ କଲେହେଁ ଅନଧିକାର ଚର୍ଚ୍ଚା କରେ, ସେ

---

ଶତ୍ରୁର ଆନନ୍ଦ ବୃଦ୍ଧି କରେ ସେ ଅପାର ।

ଘୋର ବିପଦରେ ପଡ଼େ—ଯେପରି ଏକ ଗର୍ଦ୍ଦଭ ଚିତ୍କାର କରି ହତ ହୋଇଥିଲା ।

ଦମନକ—ତାହା କି ପ୍ରକାର ?

କରଟକ କହିଲା—

## ରଜକ ଓ ଗର୍ଦ୍ଦଭ

କାଶୀରେ କର୍ପୂରପଟ ନାମକ ଜଣେ ରଜକ ଥିଲା । ସେ ଏକ ଦିନ ବହୁ ପରିଶ୍ରମ କରିବା ପରେ ଅନେକ ରାତ୍ରି ପର୍ଯ୍ୟନ୍ତ ଗାଢ଼ ନିଦ୍ରା ଯାଇଥିଲା । ଇତ୍ୟବସରରେ ତାହାର ଦ୍ରବ୍ୟାଦି ଚୋରି କରିବା ଉଦ୍ଦେଶ୍ୟରେ ଜଣେ ଚୋର ତାହାର ଗୃହରେ ପ୍ରବେଶ କଲା । ତାହାର ଗୃହ-ପ୍ରାଙ୍ଗଣରେ ଗୋଟିଏ ଗର୍ଦ୍ଦଭ ବନ୍ଧା ହୋଇଥିଲା । ଗୋଟିଏ କୁକୁର ମଧ୍ୟ ସେଠାରେ ଥିଲା । ସେହି ଚୋରକୁ ଦେଖି ଗର୍ଦ୍ଦଭ କୁକୁରକୁ କହିଲା, "ସଖେ ! ଏହି କାର୍ଯ୍ୟ ତ ତୁମ୍ଭର, ତେବେ ଚିତ୍କାର କରି ପ୍ରଭୁଙ୍କୁ ଜାଗରିତ କରୁନାହଁ ?" କୁକୁର କହିଲା, "ଭଦ୍ର ! ମୋ କାର୍ଯ୍ୟ ସକାଶେ ତୁମ୍ଭେ ଚିନ୍ତିତ ହୁଅନାହିଁ । ତୁମେ ଜାଣ ଯେ, ମୁଁ ଦିବାରାତ୍ରି ଏହି ଗୃହ ରକ୍ଷା କରେଁ, କିନ୍ତୁ ଏହି ବ୍ୟକ୍ତି ବହୁଦିନ ଆତ୍ମସୁଖରେ ମଗ୍ନ ରହି, ମୋ ଦ୍ୱାରା ତାହାର ଯେଉଁ ଉପକାର ହୁଏ, ତାହା ଥରେ ହେଲେ ଭାବି ଦେଖେନାହିଁ ଏବଂ ସେହି କାରଣରୁ ମୋତେ ଆହାର ଦେବାରେ ମଧ୍ୟ ତାହାର ଏତେ ଅଯତ୍ନ । ଦୁଃଖରେ ନ ପଡ଼ିଲେ ଭୃତ୍ୟ ପ୍ରତି ପ୍ରଭୁର ଆଦର ଓ ସ୍ନେହ ହୁଏନାହିଁ ।"

---

ବିପଦେ ବିମୁଖ ହେବା ଘୃଣାର ବିଷୟ,

ଏହା ଶୁଣି ଗର୍ଦ୍ଦଭ କହିଲା, "ରେ ବର୍ବର ! ପ୍ରଭୁର କାର୍ଯ୍ୟ ପଡ଼ିଲେ ଯେଉଁ ବ୍ୟକ୍ତି ନିଜର ସ୍ୱାର୍ଥ ଖୋଜି ବସେ, ତାହାକୁ କଣ ହିତକାରୀ ଭୃତ୍ୟ ବୋଲାଯାଏ ?

କୁକୁର କହିଲା—

ଯଥାକାଳେ ଯେ ନ କରେ ଭୃତ୍ୟର ପାଳନ,
ହୁଏ କି ସେବାର ଯୋଗ୍ୟ ପ୍ରଭୁ ସେହି ଜନ ।"

ଏବଂ

ଆଶ୍ରିତ-ପାଳନ, ପ୍ରଭୁସେବା ଜ୍ଞାନୋପାର୍ଜ୍ଜନ, ଓ ଧର୍ମସାଧନ —ଏହି ଚାରି ବିଷୟରେ ପ୍ରତିନିଧି ନିଯୁକ୍ତ କରିବା ଉଚିତ ନୁହେଁ । ଏହି ସକଳ କାର୍ଯ୍ୟ ନିଜେ କରିବା ବିଧେୟ ।' ତାହା ଶୁଣି ଗର୍ଦ୍ଦଭ କ୍ରୋଧରେ କହିଲା, "ପାପିଷ୍ଠ ! ତୁ ପ୍ରଭୁଙ୍କ କାର୍ଯ୍ୟରେ ଅବହେଳା କରୁଅଛୁ । ବିପଦବେଳେ ପ୍ରଭୁଙ୍କୁ ସାହାଯ୍ୟ କରିବାକୁ କୁଣ୍ଠିତ ହେଉଅଛୁ ! ବଡ଼ ପାପୀ ତୁ ! ହେଉ, ପ୍ରଭୁ ଯେପରି ଜାଗରିତ ହେବେ, ମୁଁ ତହିଁର ବ୍ୟବସ୍ଥା କରୁଅଛି ! କାରଣ,

ପୃଷ୍ଠଦେଶ ଦେଇ ସେବା କରିବ ତପନ,
କରିବ ଜଠର ଆଗେ ଅଗ୍ନିର ସେବନ ।

ମମତା ଛିନ୍ନକରି ପରଲୋକସେବା ପୁଣି ଦେହପ୍ରାଣ ଦେଇ ପ୍ରଭୁ ସେବା କରିବା ଉଚିତ ।"

ଗର୍ଦ୍ଦଭ ଏହା କହି ପ୍ରାଣପଣେ ଚିତ୍କାର କଲା । ରଜକ ସେହି ଚିତ୍କାରରେ ଜାଗରିତ ହେଲା ଏବଂ ନିଦ୍ରାଭଙ୍ଗ ହେବାରୁ

---

ସକଳ କାର୍ଯ୍ୟରେ ତାହା ବ୍ୟାଘାତ ନିଶ୍ଚୟ ।

ଅତ୍ୟନ୍ତ କ୍ରୋଧରେ ଗର୍ଦ୍ଦଭକୁ ଲଗୁଡରେ ପ୍ରହାର କଲା । ସେହି ପ୍ରହାରରେ ଗର୍ଦ୍ଦଭର ମୃତ୍ୟୁ ଘଟିଲା । ଏହି କାରଣରୁ ହିଁ ମୁଁ କହୁଅଛୁ ଯେ ଅନଧିକାର ଚର୍ଚ୍ଚା କରିବା ବ୍ୟକ୍ତି ସେହି ଗର୍ଦ୍ଦଭର ଦଶା ଭୋଗ କରିବ । ଦେଖ, କେଉଁଠାରେ କେଉଁ ଶୀକାରଯୋଗ୍ୟ ପଶୁ ଅଛି, ତାହାର ଅନୁସନ୍ଧାନରେ ଆମ୍ଭେମାନେ ନିଯୁକ୍ତ ଅଛୁଁ । ଅତଏବ ଯେଉଁ କାର୍ଯ୍ୟରେ ଆମ୍ଭମାନଙ୍କ ଅଧିକାର, ତହିଁରହିଁ ଚିନ୍ତାକର । ( କରୁକାଳ ଚିନ୍ତାକରି ) କିନ୍ତୁ ଆଜ ପଶୁର ଅନୁସନ୍ଧାନ କରିବା ମଧ୍ୟ ନିଷ୍ପ୍ରୟୋଜନ, କାରଣ ଆମ୍ଭମାନଙ୍କ ଭୋଜନାବଶିଷ୍ଟ ପ୍ରଚୁର ମାଂସ ଅଛି ।

ଦମନକ ଏହା ଶୁଣି କ୍ରୁଦ୍ଧ ହୋଇ କହିଲା, "କ ! ତୁମ୍ଭେ କଣ କେବଳ ନିଜର ଆହାର ସକାଶେ ରାଜାଙ୍କ ସେବା କର ? ତୁମ୍ଭେ ଏପରି କହିବା ନିତାନ୍ତ ଅନ୍ୟାୟ ଓ ଅସଙ୍ଗତ । ଯେହେତୁ ଶତ୍ରୁଦମନ ଓ ସ୍ୱଜନ ପାଳନ ନିମିତ୍ତ ବିଜ୍ଞ ବ୍ୟକ୍ତି ରାଜସେବା କରେ । ନଚେତ୍ ଏହି ଜଗତରେ କେବଳ ନିଜ ଉଦର ସକାଶେ କିଏ ଭାର ବୋଧକରେ ? ଯାହା ଦ୍ୱାରା ବ୍ରାହ୍ମଣ, ସଜ୍ଜନ, ଆତ୍ମୀୟ ଓ ବାନ୍ଧବ ଉପକୃତ ହୁଅନ୍ତି ପୁଣି ଜୀବନ ଧାରଣ କରନ୍ତି, ତାହାର ଜୀବନ ଧନ୍ୟ । ନଚେତ୍ ଏହି ସଂସାରରେ କିଏ ବା ଆପଣାର ଉଦର ପୂର୍ତ୍ତି କରେ ନାହିଁ ? ଯେଉଁ ବ୍ୟକ୍ତି ଜୀବିତ ଥିଲେ ଶତ ଶତ ଲୋକ ବଞ୍ଚିପାରନ୍ତି, ଜଗତରେ ତାହାର ହିଁ ଜୀବନ ସାର୍ଥକ । ନଚେତ୍ କାକ ସୁଦ୍ଧା ଚଞ୍ଚୁଦ୍ୱାରା ନିଜର ଉଦର ପୂରଣ କରେନାହିଁକି ? ଦେଖ, କୌଣସି ଲୋକ ପାଞ୍ଚପଣ କଉଡ଼ି ପାଇଲେ ସୁଦ୍ଧା ଦାସତ୍ୱ ସ୍ୱୀକାର କରେ, କାହାକୁ ବା ଲକ୍ଷ ପଣ ଦେଇ ରଖାଯାଏ;

---

ଅତଳ ସାଗର ଜଳେ ହେଲେହେଁ ମଗନ,

ଏବଂ କେତେ ଯୋଗ୍ୟ ଓ କର୍ମଠ ବ୍ୟକ୍ତି ଅଛନ୍ତି, ଯେଉଁମାନେ ଲକ୍ଷ ପଣ ପାଇଲେ ସୁଦ୍ଧା ଉଚ୍ଚବାକୁ ସ୍ୱୀକୃତ ହୁଅନ୍ତି ନାହିଁ । କାରଣ,—

'ସକଳେ ତ ଏକଜାତି ସକଳେ ସମାନ,
ଅତଏବ ପରସେବା ବଡ଼ ଅପମାନ ;
ଆବର ତହିଁରେ ଯାର ପ୍ରଧାନ୍ୟ ନ ରହେ,
ଜୀବନ ମରଣ ତାର ଜାଣିବ ନିଶ୍ଚୟେ ।'

ପଣ୍ଡିତମାନେ କହିଅଛନ୍ତି ଯେ, ପୁରୁଷ, ସ୍ତ୍ରୀ, ଜଳ, ପ୍ରସ୍ତର, ଧାତୁ, କାଷ୍ଠ, ବସ୍ତ୍ର, ଘୋଟକ ଓ କୁଞ୍ଜର—ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ସ୍ୱଜାତି ଭିତରେ ପରସ୍ପର ବିସ୍ତର ଭେଦ ବିଦ୍ୟମାନ । ସ୍ନାୟୁ, ବସା ଓ ମାଂସ ବିରହିତ ଏକଖଣ୍ଡ ମଳିନ ଅସ୍ଥି ପାଇଲେ । ମଧ୍ୟ କୁକୁର ସନ୍ତୁଷ୍ଟ ହୁଏ, ଅଥଚ ତହିଁରେ ତାର କ୍ଷୁଧା-ନିବାରଣ ହୁଏନାହିଁ । କିନ୍ତୁ ସିଂହକୋଳକୁ ଯଦି ଶୃଗାଳ ଆସେ, ତାହାହେଲେ ସିଂହ ତାହାକୁ ପରିତ୍ୟାଗ କରି ହସ୍ତୀ ବଧକରେ । ସୁତରାଂ କଷ୍ଟରେ ପଡ଼ି ସୁଦ୍ଧା ସମସ୍ତେ ସ୍ୱ ସ୍ୱ ଯୋଗ୍ୟତା ଅନୁରୂପ ଜୀବିକାଲାଭର ଇଚ୍ଛା କରନ୍ତି ।

ଦେଖ, ଜଣେ ପ୍ରଧାନ ଓ ସାମାନ୍ୟ ଭୃତ୍ୟ ମଧ୍ୟରେ କେତେ ପ୍ରଭେଦ ! କୁକୁର ପ୍ରତିଦିନ ଯାହାର ଅନ୍ନ ଖାଏ, ତାହାକୁ ଦେଖିବାକ୍ଷଣି କୁକୁର ତାହାର ଚରଣତଳରେ ଯାଇ ପଡ଼େ; ପୁଣି ମୁଖ ବ୍ୟାଦାନ ଓ (କେତେ ପ୍ରକାରେ) ଲାଙ୍ଗୁଳଚାଳନ ଦ୍ୱାରା ସାକ୍ଷାତରେ ନିଜର ଅଧୀନତା ଜଣାଏ । କିନ୍ତୁ ରାଜହସ୍ତୀ ଧୀର-ଭାବରେ ରହେ; ସେହି କାରଣରୁ ଲୋକେ ଯତ୍ନପୂର୍ବକ ତାର ସେବା

---

ପରମାୟୁ ଥାଏ ଯଦି ନ ହୁଏ ମରଣ ।

କରନ୍ତି । ପଣ୍ଡିତମାନଙ୍କ ମତରେ, ଯେଉଁ ବ୍ୟକ୍ତି ବିକ୍ରମ ବିଜ୍ଞାନ ଓ ଯଶ ରକ୍ଷାକରି ଏହି ଜଗତରେ କ୍ଷଣକାଳ ମାତ୍ର ଜୀବିତ ରହେ, ତାହାର ଜୀବନ ସାର୍ଥକ । ନଚେତ୍ କାକ ମଧ୍ୟ ତ ନଜେ ଖାଇ ବଞ୍ଚେ ? ଯେ ଆତ୍ମା, ଗୁରୁ, ବନ୍ଧୁ, ଭୃତ୍ୟ ଓ ଦୀନଦୁଃଖୀ ଲୋକଙ୍କୁ ପାଳନ କରେ ନାହିଁ, ସେ ଏହି ସଂସାରରେ ରହିବା ଫଳ କଣ ? ଆହୁରି ଦେଖ, ଯେଉଁ ଲୋକର କିଛିମାତ୍ର ହିତାହିତ-ବୋଧ ନାହିଁ, ତାହାକୁ ପଣ୍ଡିତ ସମାଜ ଧିକ୍କାର କରନ୍ତି ଏବଂ ଉଦର-ପୂରଣ ଯାହାର ଏକମାତ୍ର ଲକ୍ଷ୍ୟ, ସେହି ନର-ପଶୁ ଓ ପଶୁ ମଧ୍ୟରେ ବ୍ୟବଧାନ କଣ ?

କରଟକ—ଆମ୍ଭେମାନେ ତ ରାଜାଙ୍କର ପ୍ରଧାନମନ୍ତ୍ରୀ ନୋହୁଁ; ତେବେ ଆମ୍ଭମାନଙ୍କର ଏହି ସମସ୍ତ ବିଷୟରେ କି ପ୍ରୟୋଜନ ?

ଦମନକ—କିଛିଦିନ ମଧ୍ୟରେ ଜଣେ ମନ୍ତ୍ରୀ ପ୍ରଧାନ-ସଚିବ-ପଦ ଲାଭ କରିପାରେ ଏବଂ ଅଧୋଗତି ମଧ୍ୟ ପ୍ରାପ୍ତ ହୋଇପାରେ । କାରଣ, କେହି କାହାଠାରୁ କାରଣ ବ୍ୟତୀତ ମାନ କିମ୍ବା ଅପମାନ ପାଏନାହିଁ । ଏହି ଜଗତରେ ଯେ ଯେପରି ଆଚରଣ କରେ, ସେ ତାର ଅନୁରୂପ ଫଳ ଲାଭକରେ ମାତ୍ର । ଦେଖ, ବହୁଯତ୍ନରେ ଅଶ୍ମାର ଉନ୍ନତି ହୁଏ, କିନ୍ତୁ ତାର ଅଧୋଗତି ଅତି ସହଜରେ ହୋଇଥାଏ । ଉନ୍ନତି-ପଥରେ ଅନେକ ବାଧା । ସୁତରାଂ ଏକାଗ୍ର-ଚିତ୍ତରେ ଭାବନା ଓ କଠୋର ସାଧନା ଭିନ୍ନ କଦାଚ ଉନ୍ନତି ହୁଏନାହିଁ; କିନ୍ତୁ ଅବନତି-ପଥ ଅତି ପରିଷ୍କାର । କିଞ୍ଚିତ୍ ଅସାବଧାନ

---

ହେଲେ କ୍ଷଣକାଳ ମଧ୍ୟରେ ଅଧଃପାତ ଘଟିପାରେ । ପର୍ବତ ଉପରକୁ ପ୍ରସ୍ତର ଉଠାଇ ନେବା ସକାଶେ ଅଧିକ ପରିଶ୍ରମ ଓ ସମସ୍ତ ଆବଶ୍ୟକ, କିନ୍ତୁ ପର୍ବତ ଉପରୁ ନିମ୍ନକୁ ଫିଙ୍ଗିବା କଷ୍ଟସାଧ୍ୟ ନୁହେ । ଅତଏବ ଭଦ୍ର ! ନିଜର ଉନ୍ନତିସାଧନ ଆପଣାର ଯତ୍ନ ଉପରେ ହିଁ ଏକାନ୍ତ ନିର୍ଭର କରେ । କାରଣ,

'କର୍ମଦୋଷେ କ୍ରମେ କ୍ରମେ ହୁଏ ଅଧୋଗତି
କର୍ମଗୁଣେ କ୍ରମେ କ୍ରମେ ଜାଣିବ ଉନ୍ନତି ।'

କୂପଖନକ ସର୍ବଦା ନିମ୍ନକୁ ଓହ୍ଲାଇ ଯାଏ, କିନ୍ତୁ ପ୍ରାଚୀର-ଗଠକ ଊର୍ଦ୍ଧ୍ୱକୁ ଉଠେ । ମନୁଷ୍ୟ ନିଜ କର୍ମ ଯୋଗୁଁ ନୀଚତା ବା ଉଚ୍ଚତା ପ୍ରାପ୍ତ ହୋଇଥାଏ ।

କରଟକ—ତେବେ ତୁମେ କଣ କହୁଅଛ ?

ଦମନକ—ରାଜା ପିଙ୍ଗଳକ ଜଳ ପାନ ନ କରି କୌଣସି ଭୟରେ ବ୍ୟସ୍ତସମସ୍ତ ହୋଇ ଫେରିଆସିଅଛନ୍ତି ।

କରଟକ—ତାହା ତୁମ୍ଭେ କିପରି ଜାଣିପାରିଲ ?

ଦମନକ—ଯାହାର ପ୍ରଜ୍ଞା ଅଛି, ତାହା ନିକଟରେ କୌଣସି ବିଷୟ ଅଜ୍ଞାତ ରହେ କି ? କଥିତ ଅଛି,—ଆରୋହୀଗଣ ଯେଉଁ ଦିଗରେ ଯିବାକୁ କହନ୍ତି, ଅଶ୍ୱ, ହସ୍ତୀ ପ୍ରଭୃତି ପଶୁ ସେହି ଦିଗରେ ହିଁ ଚାଲନ୍ତି । କୌଣସି ବିଷୟ କହିଲେ ପଶୁମାନେ ମଧ୍ୟ ବୁଝିପାରନ୍ତି । କିନ୍ତୁ ନ କହିଲେ ବୁଝି ଯେ ବିଷୟ ଉଦ୍ଭାବନ କରେ, ସେହି ବ୍ୟକ୍ତି ହିଁ ପ୍ରକୃତ ପଣ୍ଡିତ ପଦ-ବାଚ୍ୟ । ବୁଦ୍ଧିମାନ ଲୋକର ପ୍ରଧାନ ଲକ୍ଷଣ

---

ଆୟୁଷ ଯାହାର ଥାଏ ନ ଲଭେ ମରଣ ।

ଅନ୍ୟର ଇଙ୍ଗିତ-ଜ୍ଞାନ, ନଚେତ୍ କହିଦେଲେ ବିଷୟ ବୁଝିନେବା କାହାରି ପକ୍ଷରେ ଅସମ୍ଭବ କିମ୍ବା କଠିନ ନୁହେ । ପୁଣି, ଆକାର, ଇଙ୍ଗିତ, ଚାଲିଚଳନ, ବାକ୍ୟ, ଚେଷ୍ଟା ଓ ମୁଖନେତ୍ରଭଙ୍ଗୀ ସାହାଯ୍ୟରେ ହୃଦୟ-କଥା ସ୍ପଷ୍ଟ ବୁଝାଯାଏ । ଅତଏବ ପ୍ରଭୁଙ୍କ ଏହି ଭୟ-ଘଟନାରେ ମୁଁ ପ୍ରଜ୍ଞାବଳରେ ତାହାଙ୍କୁ ବଶ କରିପାରେ । କାରଣ ଯେଉଁ ବ୍ୟକ୍ତିର ବଚନ ପ୍ରସ୍ତାବର ଅନୁରୂପ, ଯେ ସଦ୍ଭାବ ସଦୃଶ ପ୍ରିୟ ଆଚରଣ କରେ ଏବଂ କ୍ଷମତାର ଅନୁରୂପ ଯାହା ମନରେ କ୍ରୋଧ ଜାତ ହୁଏ, ସେହି ବ୍ୟକ୍ତି ପ୍ରକୃତ ପଣ୍ଡିତ ବୋଲି ସ୍ଥିର କରାଯାଏ ।

କରଟକ—ସଖେ ! ତୁମ୍ଭେ ରାଜାଙ୍କୁ ସନ୍ତୁଷ୍ଟ କରିବାର ଉପାୟ ଜାଣ ନାହିଁ । ଦେଖ, ଯେ ନ ଡାକୁଣୁ ସମ୍ମୁଖରେ ଯାଇ ଉପସ୍ଥିତ ହୁଏ, ଯେ ନ ପଚାରୁଣୁ ଅଧିକ କଥା କହେ ଏବଂ ଯେ ନିଜକୁ ପ୍ରଭୁର ପରମ ପ୍ରିୟ ବୋଲି ଜ୍ଞାନକରେ, ସେ ଜଣେ ଦୁର୍ବୁଦ୍ଧି ସେବକ ।

ଦମନକ—ଭାଇ, ରାଜାଙ୍କ ସନ୍ତୋଷ ବିଧାନ କିପରି ହେବ ତାହା ମୁଁ ଜାଣେ ନାହିଁ ବୋଲି କହୁଅଛ ? ଦେଖ,—ସଂସାରରେ ସ୍ୱଭାବତଃ ସୁନ୍ଦର ବା କୁତ୍ସିତ କିଛି ନାହିଁ, ଯାହାର ଯେଉଁ ବିଷୟରେ ରୁଚି, ତାହାକୁ ତାହାହିଁ ସୁନ୍ଦର ଦିଶେ । ପୁଣି,—

‘ଯାହାର ଯେ ଭାବ, ସେହି ଭାବେ ତାର ମନେ—
ପଶି ସୁଧୀ, ଶୀଘ୍ର ତାକୁ ନିଜ ବଶେ ଆଣେ ।

---

ସାର୍ଥକ ଜନମ ଯହିଁ ସ୍ୱାଧୀନତା ରହେ,

ଆହୁରି ଦେଖ, "କିଏ ଅଛି ଏଠାରେ ?"—ପ୍ରଭୁ ଏପରି କହିବା ଠାରୁ, ପ୍ରକୃତ ସେବକ କହେ, "ଆଜ୍ଞା ମୁଁ ଅଛି, କି ହୁକୁମ ?" ଆଦେଶ ପାଇବାମାତ୍ରେ ଯେ ପାଳନ କରେ, ପଣ୍ଡିତମାନଙ୍କ ମତରେ ସେ ପ୍ରକୃତ ସେବକ। ଯେ ଧୈର୍ଯ୍ୟଶୀଳ, କର୍ମତତ୍ପର, ଅଳ୍ପଲାଭରେ ତୃପ୍ତ, ଯେ ପ୍ରତି ମୁହୂର୍ତ୍ତରେ ପ୍ରଭୁଙ୍କ ଆନୁକୂଲ୍ୟ ଅନୁଗତ ରହେ ଏବଂ ଯେ କିଛି ବିଚାର ନ କରି ଆଦେଶ ପାଳନ କରେ, ସେ ରାଜସେବାର ଯୋଗ୍ୟପାତ୍ର।

କରଟକ—ବିନା ଆହ୍ୱାନରେ ତୁମ୍ଭେ ହଠାତ୍ ପ୍ରଭୁଙ୍କ ସମ୍ମୁଖକୁ ଗଲେ ସେ ଯଦି ଅପମାନ କରନ୍ତି ? / ୫୫

ଦମନକ—ହଁ, ଏ କଥା ସତ୍ୟ; କିନ୍ତୁ ପ୍ରଭୁଙ୍କ ନିକଟରେ ଭୃତ୍ୟର ଉପସ୍ଥିତ ଥିବା ଅବଶ୍ୟ କର୍ତ୍ତବ୍ୟ ନୁହେ କି ? ଯେଉଁ ଲୋକ ଦୋଷଭୟରେ କାର୍ଯ୍ୟ କରିବାକୁ ପରାଙ୍ମୁଖ ହୁଏ, ସେ ନିତାନ୍ତ କାପୁରୁଷ। ଅଜୀର୍ଣ୍ଣ ଭୟରେ କିଏ କେବେ ଆହାର ପରିହାର କରେ କି ? ଦେଖ, ଯେ ସର୍ବଦା ରାଜାଙ୍କ ନିକଟରେ ରହେ, ସେ ନିର୍ଗୁଣ ହେଲେ ହେଁ ରାଜାଙ୍କ ପ୍ରିୟପାତ୍ର ହୋଇଉଠେ ! ରାଜା, ସ୍ତ୍ରୀ ଓ ଲତା ଏମାନେ ଯାହାନିକଟରେ ରହନ୍ତି, ତାହାର ହିଁ ଆଶ୍ରୟ ନିଅନ୍ତି।

କରଟକ—ତେବେ ତୁମ୍ଭେ ତାଙ୍କାଙ୍କଠାକୁ ଯାଇ କଣ କହିବ ?

ଦମନକ—ଶୁଣ, ପ୍ରଭୁ ମୋ ପ୍ରତି ଅନୁରକ୍ତ କିମ୍ବା ବିରକ୍ତ, ତାହା ପ୍ରଥମରେ ଜାଣିବ।

କରଟକ—କି କି ଲକ୍ଷଣ ଦେଖି ତାହା ଜଣାଯାଇପାରେ ?

ଦମନକ—ଭାଇ ଶୁଣ, ଦୂରରୁ ଦୃଷ୍ଟିପାତ, ସହାସ୍ୟ ବଦନ କୁଶଳ ପ୍ରଶ୍ନକାଳରେ ଅତ୍ୟନ୍ତ ଆଦର ଓ ଯତ୍ନ, ଉତ୍ତମ ବସ୍ତୁଲାଭରେ

---

ପରାଧୀନେ ପ୍ରାଣ ଥିବା ମରଣ ନିଷ୍ଟିଏ।

ତାହାର ସ୍ମରଣ, ଅସାକ୍ଷାତରେ ଗୁଣକୀର୍ତ୍ତନ, ଦାନକାଳରେ ସୁମିଷ୍ଟ ବଚନ ପ୍ରକାଶ, ଦୋଷ କଲେ ମଧ୍ୟ ଗୁଣ ଗ୍ରହଣ—ଏହି ସମସ୍ତ ପ୍ରଭୁ ପ୍ରୀତିର ଲକ୍ଷଣ । 'ଦେବ, ଦେବ' ବୋଲି କହି କାଳହରଣ କରି ଆଶା ବଢ଼ାଇବା ଏବଂ କେବେ ନ ଦେବା, ଏହି ସବୁ ଲକ୍ଷଣ ଦେଖାଗଲେ ପ୍ରଭୁ ବିରକ୍ତ ବୋଲି ଧରାଯାଏ । ପ୍ରଭୁଙ୍କ ଏହି ସକଳ ଲକ୍ଷଣ ବୁଝି, ଯେପରି ତାହାଙ୍କୁ ମୋ ହାତକୁ ଆଣିପାରେ, ସେପରି କରିବି । କାରଣ—ଉପାୟ ଅପାୟ ଦୁଇ ଦିଗ ଦେଖାଇ ପ୍ରଭୁଙ୍କୁ ବିପଦ ସମ୍ପଦ ଉଭୟ ବୁଝାଇଦେବା ଭଲ । ସୁବୁଦ୍ଧି ସେବକ ଏପରି କୌଶଳ ବିସ୍ତାର କରେ, ଯେପରି ହଠାତ୍ ପ୍ରଭୁଙ୍କ କାର୍ଯ୍ୟ ସିଦ୍ଧ ହୁଏ । ଲକ୍ଷଣ ଭେଦରେ ପ୍ରଭୁ ତିନି ପ୍ରକାର, ଯଥା—ଅନୁରକ୍ତ, ବିରକ୍ତ ଓ ମଧ୍ୟସ୍ଥ । ଅନୁରକ୍ତ ପ୍ରଭୁ ସର୍ବଦା ଦୋଷରେ ଗୁଣ ଦେଖେ, ଅର୍ଥାତ୍ ଦୋଷ କଲେ ମଧ୍ୟ ତାହା ନ ଧରି ସର୍ବଦା ଗୁଣଭାଗ ଗ୍ରହଣ କରେ । ବିରକ୍ତ ପ୍ରଭୁ ସର୍ବଦା ଗୁଣରେ ଦୋଷ ଦେଖେ, ଅର୍ଥାତ୍ ଉତ୍ତମ କାର୍ଯ୍ୟ କଲେ ମଧ୍ୟ ଗୁଣଭାଗ ଗ୍ରହଣ ନ କରି ସର୍ବଦା ଦୋଷ ବାଛେ । ମଧ୍ୟସ୍ଥ ପ୍ରଭୁଠାରେ ସର୍ବଦା ସୁବିଚାର ଦେଖାଯାଏ; ଯେହେତୁ ସେ ଦୋଷରେ ଦୋଷ ଏବଂ ଗୁଣରେ ଗୁଣ ଦେଖେ, ଅର୍ଥାତ୍ ଦୋଷ କଲେ ଦୋଷ ଧରେ ଏବଂ ଭଲ କାର୍ଯ୍ୟ ଦେଖି ଗୁଣ ଗ୍ରହଣ କରେ ।

କରଟକ—ତଥାପି ପ୍ରସଙ୍ଗ ନ ବୁଝି ତୁମ୍ଭେ ପ୍ରଭୁଙ୍କୁ କୌଣସି କଥା କହିବ ନାହିଁ । କାରଣ—ବୃହସ୍ପତି ତୁଲ୍ୟ ବିଦ୍ୱାନ୍ ହେଲେ ହେଁ; ଯେ ପ୍ରକରଣ ନ ବୁଝି କଥା କହେ, ସେ ନିର୍ବୋଧ ବିବେଚିତ ହୁଏ ତାହାକୁ ସମସ୍ତେ ଉପହାସ କରିଥାନ୍ତି ।

---

କରେ ଧର୍ମ ଅର୍ଥପ୍ରତି ସଦା ସ୍ୱେଚ୍ଛାଚାର,

ଦମନକ—ମିତ୍ର, ତୁମ୍ଭେ ସେଥିଲାଗି ଭୟ କର ନାହିଁ । ଅବସର ନ ଦେଖି ମୁଁ କୌଣସି କଥା କହିବ ନାହିଁ । କାରଣ— ପ୍ରଭୁଙ୍କୁ ବିପଦରେ ପଡ଼ିବା ବା ବିପଥରେ ଗମନ କରିବା କିମ୍ବା କାର୍ଯ୍ୟକାଳରେ ବ୍ୟତିକ୍ରମ କରିବା ଦେଖି, ନ ପଚାରିଲେ ସୁଦ୍ଧା, ହିତୈଷୀ ସେବକ ପ୍ରଭୁଙ୍କୁ ହିତକଥା କହିଥାଏ । ଏପରି ସୁଯୋଗ ପାଇ ସୁଦ୍ଧା ଯଦି ତାହାଙ୍କୁ ମନ୍ତ୍ରଣା ନ ଦିଏ, ତାହାହେଲେ ମୋର ମନ୍ତ୍ରୀତ୍ୱ ବୃଥା । କାରଣ ଯେଉଁ ଗୁଣ ଥିଲେ ଜୀବନ ଧାରଣ କରନ୍ତି ଏବଂ ସାଧୁଗଣ ଯଶ ଅର୍ଜନ କରି ପାରନ୍ତି, ଗୁଣୀ ବ୍ୟକ୍ତି ସେହି ଗୁଣ ରକ୍ଷା କରିବ ଏବଂ ତାହାର ବୃଦ୍ଧି ଚେଷ୍ଟା କରିବ । ଅତଏବ ବନ୍ଧୁ, ପିଙ୍ଗଳକ ନିକଟକୁ ଯିବା ନିମିତ୍ତ ମୋତେ ଅନୁମତି ଦିଅ ।

କରଟକ—ତୁମ୍ଭର ମଙ୍ଗଳ ହେଉ, ଅଭୀଷ୍ଟ ସିଦ୍ଧ କରି ଆସ । ଧନ ଓ ମାନ ଅର୍ଜନ କରି ଏବଂ ଶତ୍ରୁପକ୍ଷ ବିନଷ୍ଟ କରି ନିରାପଦରେ ବାହୁଡ଼ି ଆସ, ଏହା ହିଁ ମୋର କାମନା ।

ଅନନ୍ତର ଦମନକ ବିସ୍ମିତଭାବରେ ପିଙ୍ଗଳକ ସମୀପକୁ ଗମନ କଲା । ରାଜା ତାହାକୁ ଦୂରରୁ ଦେଖି ପ୍ରବେଶ କରିବାକୁ ଅନୁମତି ଦେବାରୁ ସେ ଯାଇ ରାଜାକୁ ସାଷ୍ଟାଙ୍ଗ ପ୍ରଣାମ କରି ବସିଲା । ରାଜା ପିଙ୍ଗଳକ ଦମନକକୁ କହିଲା, 'ବହୁକାଳ ପରେ ତୁମ୍ଭଙ୍କୁ ଦେଖିଲି ।'

ଦମନକ—ଯଦ୍ୟପି ମୋପରି ସେବକରେ ମହାରାଜାଙ୍କର କୌଣସି ପ୍ରୟୋଜନ ନାହିଁ, ତଥାପି କାର୍ଯ୍ୟକାଳ ଉପସ୍ଥିତ ହେଲେ ପ୍ରଭୁଙ୍କ ନିକଟରେ ଥିବା ଅନୁଜୀବୀର ଅବଶ୍ୟ କର୍ତ୍ତବ୍ୟ, ଏହି ଭାବି ଆସିଲି । କାରଣ—ତୃଣ ସାମାନ୍ୟ ପଦାର୍ଥ ହେଲେ ହେଁ,

---

ଅ.ଶାର କୁଇଦ୍ରେ ସିନା ଏହି ପୁରସ୍କାର ।

ଦନ୍ତମାର୍ଜ୍ଜନ କମ୍ବା କର୍ଣ୍ଣ-କଣ୍ଡୂୟନ ନିମିତ୍ତ ପ୍ରଭୁଙ୍କ ପ୍ରୟୋଜନରେ ଲଗେ ତ ! ତେବେ ବାକ୍‌ଶକ୍ତି-ହସ୍ତପଦ-ପ୍ରାପ୍ତ ମନୁଷ୍ୟର କଣ ଉପଯୋଗିତା ନାହିଁ ? ମୁଁ ବହୁକାଳ ହେଲା ଆପଣଙ୍କ ନିକଟରେ ଅବଜ୍ଞାତ ଥିଲେ ହେଁ ମୋର ବୁଦ୍ଧି ଶୁଦ୍ଧି ଯେ ଲୁପ୍ତ ହୋଇଅଛି, ଏପରି ଆଶଙ୍କା କରିବେ ନାହିଁ । କାରଣ, ଯଦ୍ୟପି କେହି ମଣିକୁ ପଦ ଦଳିତ ଏବଂ କାଚକୁ ମସ୍ତକରେ ଧାରଣ କରେ, ତଥାପି ବସ୍ତୁ ବିକ୍ରୟ ବେଳେ ସ୍ପଷ୍ଟ ପ୍ରତିପନ୍ନ ହେବ ଯେ 'କାଚ କାଚ ମଣିମଣି ।' ଦେଖନ୍ତୁ, ପ୍ରଜ୍ୱଳିତ ହୁତାଶନର ମୁଖ ନିମ୍ନ ଦିଗ ପ୍ରତି ଧରି ରହିଲେ ସୁଦ୍ଧା, ତାର ଶିଖା ନିମ୍ନକୁ ନ ଯାଇ ସର୍ବଦା ଊର୍ଦ୍ଧ୍ୱକୁ ହିଁ ଉଠେ । ସେପରି ଧୀରବୁଦ୍ଧି ବ୍ୟକ୍ତି ଅବନତ ଅବସ୍ଥାରେ ବା ନୀଚ ପଦରେ ରଖାଗଲେ ସୁଦ୍ଧା, ତାହାର ବୁଦ୍ଧି ଯେ ନୀଚତା ପ୍ରାପ୍ତ ହେବ, ଏପରି ମନେ କରିବା ଅନୁଚିତ ।

ମହାରାଜ ! କିଏ କେଉଁ ଗୁଣର ଲୋକ, ପ୍ରଭୁର ତାହା ବିଶେଷ ରୂପେ ଜାଣି ରଖିବା ଉଚିତ । କାରଣ ରାଜା ଯଦି ଗୁଣର ବିଚାର ନ କରି ସମସ୍ତଙ୍କୁ ସମଭାବରେ ଦେଖେ, ତାହାହେଲେ ପ୍ରକୃତ ଗୁଣୀ, କୃତି ବ୍ୟକ୍ତିଙ୍କର ଉତ୍ସାହ ବିନଷ୍ଟ ହୁଏ । ଗୁଣଭେଦରେ ଭୃତ୍ୟ ତ୍ରିବିଧ ଯଥା:—ଉତ୍ତମ, ମଧ୍ୟମ ଓ ଅଧମ । ବିବେଚନା କରି ଯଥାଯୋଗ୍ୟ ଗୁଣ ଅନୁଯାୟୀ, ନିଜ କାର୍ଯ୍ୟରେ ଭୃତ୍ୟ ନିଯୋଜିତ କରିବା ରାଜାର କର୍ତ୍ତବ୍ୟ । ଭୃତ୍ୟ ଏବଂ ଅଳଙ୍କାର ଯଥାଯୋଗ୍ୟ ସ୍ଥାନରେ ରଖାଯିବା ଏକାନ୍ତ ବାଞ୍ଛନୀୟ । ନଚେତ୍ ସେମାନଙ୍କର ଶୋଭା ନାହିଁ । ମୁକୁଟ ମଣି ପାଦରେ ଏବଂ ନୂପୁର ମସ୍ତକରେ କଦାପି ସୁନ୍ଦର ଦେଖାଯାଏ ନାହିଁ । ପୁଣି ଦେଖନ୍ତୁ, ମଣି କନକ

ଭୂଷଣ ମଧ୍ୟରେ ଅପୂର୍ବ ଶୋଭା ପ୍ରାପ୍ତ ହୁଏ । କେହି ଯଦି ସୀସାରେ ମଣି ଖଚିତ କରେ, ତାହାହେଲେ ମଣି, ନିଜେ ସୁନ୍ଦର ଦେଖାଯାଏ ନାହିଁ ବେଳ ଦୁଃଖ ପ୍ରକାଶ କରେ ନାହିଁ । କିନ୍ତୁ ସମସ୍ତେ ସେହି ଲୋକର ନିନ୍ଦା କରନ୍ତି—ଯେ ସୀସାରେ ମଣି ବସାଏ ।

ଯେଉଁ ବ୍ୟକ୍ତି ଅମୂଲ୍ୟ ମଣିକୁ ପଦର ଭୂଷଣ କରି ମୁକୁଟ ଉପରେ କାଚ ସ୍ଥାପନ କରେ, ସେ ମୂର୍ଖବୋଲି ବିବେଚିତ ହୁଏ; କିନ୍ତୁ ମଣିର କିଛି ଦୋଷ ହୁଏନାହିଁ । ଯେଉଁ ଭୃତ୍ୟର ବୁଦ୍ଧି ଓ ପ୍ରଭୁଭକ୍ତି ଏହି ଦୁଇଗୁଣ ଥାଏ, ରାଜାର ତାହାକୁ ହିଁ କାର୍ଯ୍ୟରେ ନିଯୁକ୍ତ କରିବା ଉଚିତ, ଯେହେତୁ ଏପରି ନିଯୋଗରେ ସର୍ବସିଦ୍ଧି ଲାଭ ହୋଇଥାଏ । କାରଣ ଶସ୍ତ୍ର, ଶାସ୍ତ୍ର, ନର, ନାରୀ, ବୀଣା, ବାକ୍ୟ ଓ ଅଶ୍ୱ—ଏମାନେ ଯୋଗ୍ୟ ପୁରୁଷ ହସ୍ତରେ ପଡ଼ିଲେ ଉତ୍କର୍ଷ ଏବଂ ଅଯୋଗ୍ୟ ପୁରୁଷ ହସ୍ତରେ ପଡ଼ିଲେ ଅପକର୍ଷ ଲାଭ କରିଥା'ନ୍ତି ।

ଅସମର୍ଥ ଅନୁରକ୍ତ ଭୃତ୍ୟରେ କି ପ୍ରୟୋଜନ ? ଏବଂ ସମର୍ଥ ଅଭକ୍ତ ସେବକରେ ବା କି ପ୍ରୟୋଜନ ? ମହାରାଜ, ମୋଠାରେ ସାମର୍ଥ୍ୟ ଓ ଭକ୍ତି ଉଭୟ ଥିବା ସ୍ଥଳେ ମୋ ପ୍ରତି ଆପଣ ଯେ ଅବଜ୍ଞା ପ୍ରକାଶ କରି ଅଛନ୍ତି, ତହିଁରୁ ଆପଣଙ୍କ ସୁବିଚାରର ପରିଚୟ ମିଳୁନାହିଁ ।

ଯଦି ରାଜା ତାହାର ପରିଜନଗଣଙ୍କୁ ଘୃଣା ବା ଅନାଦର କରେ, ତାହାହେଲେ ସେମାନେ ଏକାବେଳକେ ହତଜ୍ଞାନ ହୋଇ ପଡ଼ନ୍ତି । ଯେଉଁ ରାଜାର ପରିଜନଗଣ ହତବୁଦ୍ଧି ହୁଅନ୍ତି, ତାହା

---

 କ୍ଷଣମାତ୍ର ବଞ୍ଚେ ଯେତ୍କୁ ସେହି ଭାଗ୍ୟବାନ ।

ନିକଟକୁ ବିଜ୍ଞ ବ୍ୟକ୍ତିମାନେ ଆସନ୍ତି ନାହିଁ । ବିଜ୍ଞ ବ୍ୟକ୍ତିଗଣ ଯେଉଁ ରାଜାକୁ ପରିହାର କରନ୍ତି, ତାହାର ରାଜନୀତି ଫଳବତୀ ହୁଏ ନାହିଁ । ରାଜାର ସମସ୍ତ ନୀତି ବିଫଳ ହେଲେ ତାହାର ରାଜ୍ୟ ଏକାବେଳକେ ଛାରଖାର ହୋଇଯାଏ । ଆହୁରି ଦେଖନ୍ତୁ, ମହାରାଜ ଯାହା ଉପରେ ରାଜାର ସମ୍ମାନଦୃଷ୍ଟି ପତିତ ହୁଏ, ତାହାକୁ ସମସ୍ତ ଦେଶବାସୀ ସମାଦର କରନ୍ତି ଏବଂ ଯାହା ପ୍ରତି ରାଜା ଅବଜ୍ଞା ପ୍ରକାଶ କରେ, ସେ କୌଣସି ସ୍ଥାନରେ ଗୌରବ ଲାଭ କରି ପାରେ ନାହିଁ । ବାଳକ ମଧ୍ୟ ଉଚିତ କଥା କହିଲେ ବୁଦ୍ଧିମାନ୍ ଲୋକ ତାହା ସାଦରେ ଗ୍ରହଣ କରେ । ସୂର୍ଯ୍ୟାଲୋକର ଅଭାବରେ କ୍ଷୁଦ୍ର ଦୀପ ମଧ୍ୟ ଅନ୍ଧକାର ନଷ୍ଟ କରି ପାରେ ତ ?

ପିଙ୍ଗଳକ — ଭଦ୍ର ଦମନକ, ଏ କଣ ? ତୁମ୍ଭେ ଆମ୍ଭର ପ୍ରଧାନ ମନ୍ତ୍ରୀଙ୍କ ପୁତ୍ର, ଅତି ବୁଦ୍ଧିମାନ୍ । ତୁମ୍ଭେ କୌଣସି ଦୁଷ୍ଟ ଲୋକର କଥାରେ ବିଶ୍ୱାସ କରି ଆଜଯାଏଁ ମୋ ନିକଟକୁ ଆସି ନ ଥିଲ । ବର୍ତ୍ତମାନ ତୁମ୍ଭର କି ଅଭିଳାଷ, ତାହା ବ୍ୟକ୍ତ କର ।

ଦମନକ—ଦେବ ଗୋଟିଏ ବିଷୟ ଜିଜ୍ଞାସା କରୁଅଛି, କହନ୍ତୁ, ପ୍ରଭୁ ଜଳପାନାର୍ଥୀ ହୋଇ ସୁଦ୍ଧା ଜଳପାନ ନ କରି ଏପରି ଚିନ୍ତିତ ଭାବରେ ରହି ଅଛନ୍ତି କାହିଁକି ?

ପିଙ୍ଗଳକ—ଉତ୍ତମ ପ୍ରଶ୍ନ କରିଅଛ । ତୁମ୍ଭେ ବିଶ୍ୱାସର ପାତ୍ର, ଅତଏବ ଗୋପନୀୟ ହେଲେହେଁ ଏହି କଥା ତୁମ୍ଭଙ୍କୁ କୁହାଯାଇ ପାରେ । କହୁଅଛି ଶୁଣ । ବର୍ତ୍ତମାନ ଏକ ଅପୂର୍ବ ଜନ୍ତୁ ଆସି ଏହି

---

ଆପଣାର ଦାସ-ବନ୍ଧୁ-ଭୃତ୍ୟ-ପରିଜନ,

ବନ ଅଧିକାର କରିଅଛି । ଅତଏବ ଏହି ସ୍ଥାନ ଆମ୍ଭମାନଙ୍କର ତ୍ୟାଗ କରିବା ଉଚିତ । ତୁମ୍ଭେ ମଧ୍ୟ ତାହାର ଭୀଷଣ ଶବ୍ଦ ଶୁଣିଥିବ । ତାହାର ଶବ୍ଦ ଯେପରି ଭୟଙ୍କର, ତାହାର ବଳ ମଧ୍ୟ ବୋଧହୁଏ ସେପରି ଅତ୍ୟଧିକ ।

ଦମନକ—ଦେବ ! ଯଥାର୍ଥତଃ ଏଥିରେ ଭୟର କାରଣ ଯଥେଷ୍ଟ ଅଛି । ଆମ୍ଭେମାନେ ମଧ୍ୟ ସେହି ଭୟାନକ ଶବ୍ଦ ଶୁଣିଅଛୁଁ । କିନ୍ତୁ ଯେ ପ୍ରଥମରେ ମନ୍ତ୍ରଣା ନ କରି ସ୍ଥାନ ତ୍ୟାଗ ଅଥବା ରଣସଜ୍ଜା କରିବା କାରଣ ରାଜାଙ୍କୁ ପରାମର୍ଶ ଦିଏ, ସେ କଣ ମନ୍ତ୍ରୀପଦବାଚ୍ୟ ? ଦେଖନ୍ତୁ, ଏ ପ୍ରକାର କାର୍ଯ୍ୟସଙ୍କଟ ଉପସ୍ଥିତ ହେଲେ ଭୃତ୍ୟମାନଙ୍କ ଉପଯୋଗିତା ପରୀକ୍ଷା କରିବା ଉଚିତ । କଷଟି ପଥରରେ କଷି ଦେଖିଲେ ଯେପରି ସୁବର୍ଣ୍ଣର ଦୋଷ-ଗୁଣ ଧରାଯାଏ, ସେପରି ସଙ୍କଟ ସମୟରେ ପରୀକ୍ଷା କଲେ ସ୍ପଷ୍ଟ ବୁଝାଯାଏ ଯେ,

"ଆପଣାର ଦାରା-ବନ୍ଧୁ-ଭୃତ୍ୟ ପରିଜନ,
ସ୍ୱରୂପ ପ୍ରକୃତି କା'ର ଯୋଗ୍ୟତା କେମନ ।"

ପିଙ୍ଗଳକ—ଭଦ୍ର, ମୁଁ ବିଷମ ଶଙ୍କାରେ ଅଭିଭୂତ ହୋଇଅଛି । ଦମନକ ଭାବିଲା, 'ତାହା ନ ହେଲେ, ରାଜ୍ୟସୁଖ ଛାଡ଼ି ସ୍ଥାନାନ୍ତରକୁ ଯିବା ସକାଶେ ମୋତେ କାହିଁକି କହୁଥା'ନ୍ତେ ?' ତାପରେ ପିଙ୍ଗଳକକୁ କହିଲା—"ମହାରାଜ ! ମୋ ଶରୀରରେ ପ୍ରାଣ ଥିବାଯାଏଁ ଆପଣ ଭୟ କରନ୍ତୁ ନାହିଁ । କରଟକ ପ୍ରଭୃତିଙ୍କୁ ମଧ୍ୟ ଆଶ୍ୱାସ ପ୍ରଦାନ କରନ୍ତୁ । କାରଣ, ବିପଦର ପ୍ରତିକାରାର୍ଥେ ଆତ୍ମୀୟଗଣଙ୍କ ସମ୍ମିଳନ ଦୁର୍ଲ୍ଲଭ ହୋଇଥାଏ ।'

---

ସଂକଟେ ପଡ଼ିଲେ ଲୋକେ ବୁଝନ୍ତି ବନ୍ଧନ ।

ତଦନନ୍ତରରେ ପିଙ୍ଗଳକ କରଟକ ଓ ଦମନକଙ୍କୁ ବହୁମୂଲ୍ୟ ରାଜପ୍ରସାଦ ଦାନରେ ସମ୍ମାନିତ କରିବାରୁ ସେମାନେ ସେହି ଭୟର ପ୍ରତିକାରାର୍ଥେ ପ୍ରତିଜ୍ଞାବଦ୍ଧ ହୋଇ ପ୍ରସ୍ଥାନ କଲେ । ଯାଉଁ ଯାଉଁ କରଟକ ଦମନକକୁ କହିଲା, 'ସଖେ ! ଏହି ଭୟ କାରଣର ପ୍ରତିକାର କରିବା ଆମ୍ଭମାନଙ୍କର ସାଧ୍ୟ ବା ଅସାଧ୍ୟ ଏହା ନ ଜାଣି ତୁମ୍ଭେ କପରି ଭୟଶାନ୍ତିର ପ୍ରତିଜ୍ଞା କରି ଏହି ବହୁମୂଲ୍ୟ ରାଜପସାଦ ଗ୍ରହଣ କଲ ? କାରଣ ଯେଉଁ ବ୍ୟକ୍ତି ଯାହାର କୌଣସି ଉପକାର ସାଧନ କରିବାକୁ ଅସମର୍ଥ, ସେ ତାହାଠାରୁ କୌଣସି ଉପହାର ଗ୍ରହଣ କରିବ ନାହିଁ, ତହିଁରେ ପୁଣି ରାଜାଙ୍କ ଉପହାର ! ଦେଖ ଯାହଙ୍କ ପ୍ରସାଦରେ ଲକ୍ଷ୍ମୀ ଲଭ ହୁଏ, ଯାହାଙ୍କର ପରାକ୍ରମ ବଳରେ ଲୋକେ ବିଜୟ ଲାଭ କରି ପାରନ୍ତି ଏବଂ ଯେ ବିରାଗାନ୍ୱିତ ହେଲେ ମୃତ୍ୟୁ ସୁନିଶ୍ଚିତ, ସେହି ରାଜା ଯେ ସର୍ବତେଜୋମୟ, ଏଥିରେ ସନ୍ଦେହ ନାହିଁ । ରାଜା ବାଳକ ହେଲେ ହେଁ ପୂଜ୍ୟ—କଦାପି ହେୟ ନୁହନ୍ତି । ରାଜା ମାନବ-ଆକାର ଧାରଣ କଲେ ସୁଦ୍ଧା, ସେ ସକଳ ଦେବତାଙ୍କ ସାର ।'

ଦମନକ ହାସ୍ୟ କରି କହିଲା, 'ମିତ୍ର ! ତୁମ୍ଭେ ତୁନି ହୋଇ ରହ । ମୁଁ ପ୍ରଭୁଙ୍କ ଭୟର କାରଣ ବୁଝିଅଛି । ସେହି ଭୀଷଣ ଶବ୍ଦ ଗୋଟିଏ ବଳଦର, ବଳଦ ତ ଆମ୍ଭମାନଙ୍କର ଭକ୍ଷ୍ୟ, ସେ ଯେ ସିଂହର ଭକ୍ଷ୍ୟ, ତାହା କହିବା ବାହୁଲ୍ୟ ମାତ୍ର ।'

କରଟକ—ତୁମ୍ଭେ ଯଦି ଏହା ଜାଣ, ତାହାହେଲେ ପ୍ରଭୁଙ୍କର ଭୟ କି ହେତୁ ସେତେବେଳେ ଦୂର କଲ ନାହିଁ ?

---

ଥିଲେ ହେଁ ସହସ୍ର ତାର ଭଲ କୁଳାଙ୍ଗାର;

ଦମନକ—ପ୍ରଭୁଙ୍କର ଭୟ ସେତେବେଳେ ଦୂର କରି ଦେଇଥିଲେ, ଏହି ମହାମୂଲ୍ୟ ରାଜପ୍ରସାଦ କିଣ ମିଳିଥା'ନ୍ତା ? କଥିତ ଅଛି ଯେ ଯେତେ କାଳ ଯାଏଁ ପ୍ରଭୁର ଭୃତ୍ୟରେ ପ୍ରୟୋଜନ ଥାଏ, ତେତେକାଳ ପର୍ଯ୍ୟନ୍ତ ଭୃତ୍ୟର ସ୍ୱଚ୍ଛନ୍ଦଭାବରେ ଜୀବିକା ଅର୍ଜ୍ଜନ ହୁଏ । ଭୃତ୍ୟ ସେହି ପ୍ରୟୋଜନ ଆଉ ରଖି ନ ପାରିଲେ ଦଧିକର୍ଣ୍ଣ ବିଡ଼ାଳର ଦଶା ଭୋଗ କରେ ।

କରଟକ—ତାହା କିପରି ଘଟିଥିଲା ?

ଦମନକ କହିଲା—

——————

## ସିଂହ, ମୂଷିକ ଓ ବିଡ଼ାଳ

ଭାରତର ଉତ୍ତର ପ୍ରଦେଶରେ ଅର୍ବ୍ବୁଦଶିଖର ବୋଲି ଏକ ପର୍ବତ ଅଛି । ସେଠାରେ ଦୁର୍ଦ୍ଦାନ୍ତ ନାମକ ଅତି ପରାକ୍ରାନ୍ତ ଏକ ସିଂହ ବାସ କରେ । ସେ ଗିରିଗୁହାରେ ଶୟନ କରିଥିବା ସମୟରେ ଏକ ମୂଷିକ ପ୍ରତ୍ୟହ ଯାଇ ତାହାର କେଶରର ଅଗ୍ରଭାଗ ଛେଦନ କରି ଦେଉଥାଏ । ମୂଷିକ ତାହାଁର କେଶରାଗ୍ର କର୍ତ୍ତନ କରିବା ଜାଣିପାରି ସିଂହ କ୍ରୁଦ୍ଧ ହେଲା । କିନ୍ତୁ ମୂଷିକ ଗର୍ତ୍ତ ମଧ୍ୟରେ ଲୁଚି ରହୁଥିବାରୁ ତାହାକୁ ଧରି ନ ପାରି ସିଂହ ଭାବିଲା—'ଏହି ବିଷୟରେ କଣ କରିବା ଉଚିତ ?' ଶୁଣିଅଛି, ଶତ୍ରୁ ଯଦି କ୍ଷୁଦ୍ରଚର, ତାହାହେଲେ ତାହାପ୍ରତି ବିକ୍ରମ ବ୍ୟବହାର କରିବା ଅନୁଚିତ; କିନ୍ତୁ ତାହା ସଦୃଶ ଯୋଦ୍ଧାର ସାହାଯ୍ୟରେ ସେହି ଶତ୍ରୁକୁ ଦମନ କରିବା ଶ୍ରେୟସ୍କର ।

---

ଧନ ଥିବା କେ କା ବୋଲି ସେବା କରେ ତାର ।

ସିଂହ ଏହା ଶୁଣି ଗ୍ରାମକୁ ଯାଇ ଦଧିକର୍ଣ୍ଣ ନାମକ ଏକ ବିଡ଼ାଳକୁ ଆଣିଲା । ତାହାକୁ ମାଂସାଦି ଆହାର ଦାନରେ ସନ୍ତୁଷ୍ଟ କରି ପରମ ଯତ୍ନସହକାରେ ନିଜ ଗୁହାରେ ରଖିଲା । ତଦବଧି ସେହି ବିଡ଼ାଳର ଭୟରେ ମୂଷିକ ଗର୍ତ୍ତରୁ ଆଉ ବାହାର ହେଲା ନାହିଁ । ଅତଏବ ସିଂହ ଅକ୍ଷତ କେଶରରେ ସୁଖ-ନିଦ୍ରା ଯାଉଥାଏ । ସିଂହ ମୂଷିକର ଶବ୍ଦ ଶୁଣିବାକ୍ଷଣି ସେହି ବିଡ଼ାଳକୁ ମାଂସାହାର ଦାନରେ ପରିତୁଷ୍ଟ କରୁଥାଏ ।

ଦିନକରେ ସେହି ମୂଷିକ କ୍ଷୁଧାର୍ତ୍ତ ହୋଇ ବାହାରକୁ ଆସିବା ମାତ୍ରେ ବିଡ଼ାଳ ତାହାର ପ୍ରାଣ ସଂହାର କରି ଭକ୍ଷଣ କଲା । ବିଡ଼ାଳ ହସ୍ତରେ ମୂଷିକ ପ୍ରାଣତ୍ୟାଗ କରିବାର ଦେଖି ଏବଂ ବିଡ଼ାଳଦ୍ୱାରା ଆଉ କିଛି ଉପକାର ହେବ ନାହିଁ ଜାଣି, ସିଂହ ବିଡ଼ାଳକୁ ଆହାର ଦେବାରେ ଯତ୍ନହୀନ ହେଲା ।

ଏଥିସକାଶେ ସ୍ୱାମୀ କହୁଥିଲି ଯେ,

"ପ୍ରଭୁର ଯାବତ ରହେ ଭୃତ୍ୟେ ପ୍ରୟୋଜନ,
ତାବତ ଭୃତ୍ୟର ହୁଏ ଜୀବିକା ଅର୍ଜ୍ଜନ ।"

ତଦ୍ୱିଉତ୍ତରେ ଦମନକ ଓ କରଟକ ସଞ୍ଜୀବକଙ୍କ ନିକଟକୁ ଗଲେ । କରଟକ ସେଠାରେ ଏକ ବୃକ୍ଷମୂଳରେ ସଦର୍ପେ ଉପବେଶନ କଲା । ଦମନକ ସଞ୍ଜୀବକ ସମ୍ମୁଖକୁ ଯାଇ କହିଲା, "ରେ ବଳୀବର୍ଦ୍ଧ, ମହାରାଜ ପିଙ୍ଗଳକ ମୋତେ ବନରକ୍ଷା କାର୍ଯ୍ୟରେ ନିଯୁକ୍ତ କରି-ଅଛନ୍ତି । ସେନାପତି କରଟକଙ୍କ ଆଦେଶ—ତୋତେ ଶୀଘ୍ର ଆସିବାକୁ ହେବ । ଯଦି ନ ଆସୁ ତାହାହେଲେ ଏହି ବନରୁ ଶୀଘ୍ର

---

ଇନ୍ଦ୍ରିୟ କୁପଥେ ଗଲେ କୁଳମାନ ଯାଏ,

ଦୂର ହୁଅ । ନୋହିଲେ ତୋର ବିପଦ, ପ୍ରଭୁ କ୍ରୋଧ କଲେ କଣ ହେବ ତାହା ଜାଣୁ ତ ?" ତାହା ଶୁଣି ସଞ୍ଜୀବକ କରଟକ ନିକଟକୁ ଗଲା । କାରଣ, ଯେଉଁ ଲୋକ ରାଜାଙ୍କ ଆଦେଶ ପାଳନ କରେ ନାହିଁ, ସେ ବିନା ଅସ୍ତ୍ରରେ ଆତ୍ମହତ୍ୟା କରିଥାଏ ।

ଅନନ୍ତର ଦେଶାଚାରାନଭିଜ୍ଞ ସଞ୍ଜୀବକ ଅତିଶୟ ଭୟ ସହିତ କରଟକ ସମ୍ମୁଖକୁ ଯାଇ ସାଷ୍ଟାଙ୍ଗ ପ୍ରଣାମ କଲା । କଥିତ ଅଛି, ବଳ ଅପେକ୍ଷା ବୁଦ୍ଧି ବଡ଼ । ହସ୍ତି ପୃଷ୍ଠରେ ହସ୍ତିପକର ଡିଣ୍ଡିମବାଦ୍ୟ ଘୋଷଣା କରେ ଯେ, ହସ୍ତୀ ବଳବାନ୍ ଜନ୍ତୁ ହେଲେ ହେଁ ବୁଦ୍ଧିହୀନ; ସୁତରାଂ ବୁଦ୍ଧି ନିକଟରେ ବଳ ତୁଚ୍ଛ ମାତ୍ର ।

ପରେ ସଞ୍ଜୀବକ ସଭୟେ କହିଲା, "ସେନାପତେ ! ମୋତେ କଣ କରିବାକୁ ହେବ କହନ୍ତୁ ।" କରଟକ କହିଲା, "ଯଦି ତୋର ଏହି ବନରେ ବାସ କରିବାର ଇଚ୍ଛା ଥାଏ, ତାହାହେଲେ ଶୀଘ୍ର ଯାଇ ମହାରାଜାଙ୍କ ପାଦପଦ୍ମରେ ପତିତ ହୁଅ ।" ସଞ୍ଜୀବକ କହିଲା, "ତେବେ ମୋତେ ଅଭୟ ଦାନ କରନ୍ତୁ, ମୁଁ ଯାଉଅଛି ।"

କରଟକ କହିଲା, "ଏଥିରେ ଭୟର କୌଣସି କାରଣ ନାହିଁ । ଚେଦିରାଜ ଶିଶୁପାଳ, ଶ୍ରୀକୃଷ୍ଣଙ୍କୁ ଘୃଣା କରି ଗାଳି ଦେଇଥିଲା; ତଥାପି ଶ୍ରୀକୃଷ୍ଣ କିଛି କହି ନ ଥିଲେ । ମେଘ ଗର୍ଜ୍ଜନ ସଙ୍ଗେ ଗର୍ଜ୍ଜନ କରେ ବୋଲି ସିଂହ କଣ ଶୃଗାଳ ଶବ୍ଦରେ ମଧ୍ୟ ଗର୍ଜ୍ଜନ କରିବ ? ପୁଣି ପ୍ରବଳ ତୋଫାନ କେବେ କ୍ଷୁଦ୍ର କୋମଳ ତୃଣକୁ ଉପୁଡ଼ାଏ ନାହିଁ; କିନ୍ତୁ ବୃହତ୍ ବୃହତ୍ ବୃକ୍ଷ ବିନଷ୍ଟ କରେ । ଅତଏବ ମହତ୍ ବ୍ୟକ୍ତି ମହତ୍ ଲୋକ ନିକଟରେ ହିଁ ପରାକ୍ରମ ଦେଖାଇ ଥାଏ ।"

---

ସ୍ୱାର୍ଥପର ହେଲେ ନିଜ ଧର୍ମ ଲୋପ ପାଏ ।

ତନ୍ନିମନ୍ତରେ ସେମାନେ ସଞ୍ଜୀବକକୁ ଅନତିଦୂରରେ ରଖି ପିଙ୍ଗଳକ ନିକଟକୁ ଗମନ କଲେ । ସେମାନଙ୍କ ଉପରେ ପିଙ୍ଗଳକର ଦୃଷ୍ଟି ପଡ଼ିବା ଉତ୍ତାରେ ସେମାନେ ତାହାକୁ ପ୍ରଣାମ କରିବସିଲେ । ପିଙ୍ଗଳକ ଜିଜ୍ଞାସା କଲା, "ତାହାକୁ ଦେଖିଅଛ ?"

ଦମନକ କହିଲା—ହଁ, ମହାରାଜ, ତାହାକୁ ଦେଖିଅଛି । ମହାରାଜ ତାହାର ଶବ୍ଦ ଶୁଣି ଯାହା ଭାବିଥିଲେ, ସେ ଠିକ୍ ସେହିପରି । ସେ ଅତିଶୟ ବଳବାନ୍ । ସେ ବର୍ତ୍ତମାନ ମହାରାଜାଙ୍କ ଦର୍ଶନ ଲାଭ କରିବାକୁ ଏକାନ୍ତ ଇଚ୍ଛୁକ । ଆପଣ ସଜ୍ଜୀଭୂତ ହୋଇ ବସନ୍ତୁ । କିନ୍ତୁ ତାହାର ଶବ୍ଦ ଶୁଣି ପୁନର୍ବାର ଭୀତ ହେବେ ନାହିଁ । କଥିତ ଅଛି ଯେ—ସେତୁ ମଧ୍ୟରେ ଜଳ ପ୍ରବେଶ କଲେ ତାହା ଭଗ୍ନ ହୁଏ, ମନ୍ତ୍ରଣା ପ୍ରକାଶିତ ହେଲେ ତତ୍କ୍ଷଣାତ୍ ନଷ୍ଟ ହୋଇଯାଏ । ଖଳତାରେ ସ୍ନେହ-ବନ୍ଧନ ଛିନ୍ନ ହୁଏ ଏବଂ କଥାମାତ୍ରକେ ଭୀରୁ ବ୍ୟକ୍ତି ଭଗ୍ନମନ ହୁଏ । ପ୍ରଥମତଃ ଶବ୍ଦର କାରଣ ନିର୍ଣ୍ଣୟ ନ କରି ଶବ୍ଦ ଶୁଣିବା ମାତ୍ରେ ଭୟ କରିବେ ନାହିଁ । ଜଣେ ଦୁଷ୍ଟା ସ୍ତ୍ରୀ ପ୍ରଥମତଃ ଶବ୍ଦର କାରଣ ଅନୁସନ୍ଧାନ କରି ଲୋକମାନଙ୍କଠାରୁ ସମ୍ମାନ ପ୍ରାପ୍ତ ହୋଇଥିଲା ।

ପିଙ୍ଗଳକ—କିପରି ?

ଦମନକ କହିଲା—

---

ଦୁଷ୍ଟପତ୍ନୀ ଯାର ଘରେ, ମିତ୍ର ଯାର ଶଠ,

# ଦୁଷ୍ଟା ସ୍ତ୍ରୀ ଓ ବାନରଗଣ

ଶ୍ରୀ ପର୍ବତ ମଧ୍ୟରେ ବ୍ରହ୍ମପୁର ବୋଲି ଏକ ନଗର ଅଛି । ବ୍ରହ୍ମପୁରବାସୀମାନଙ୍କର ବିଶ୍ୱାସ ଥିଲା ଯେ, ସେହି ପର୍ବତର ଶିଖର-ଦେଶରେ ଘଣ୍ଟାକର୍ଣ୍ଣ ନାମକ ଏକ ରାକ୍ଷସ ବାସକରେ । ଏକଦା ଜଣେ ଚୋର ଏକ ଘଣ୍ଟା ଚୋରି କରି ପଳାଉଥିବା ସମୟରେ ଏକ ବ୍ୟାଘ୍ର ଆସି ତାହାକୁ ଭକ୍ଷଣ କଲା । ଏକ ଦଳ ବାନର ଚୋର-ହସ୍ତ-ପତିତ/ଘଣ୍ଟା ଦେଖିଲେ । ସେମାନେ ତାହା ଧରି ପ୍ରତି-ମୁହୂର୍ତ୍ତରେ ବଜାଉଥାନ୍ତି । ନଗରବାସୀମାନେ ଦେଖିଲେ ଯେ, କିଏ ଜଣେ ମନୁଷ୍ୟକୁ ଭକ୍ଷଣ କରିଅଛି ଏବଂ ଘଣ୍ଟାଶବ୍ଦ ଘନ ଘନ ଶୁଣାଯାଉଅଛି । ତେବେ ସେମାନେ ସ୍ଥିର କଲେ, ଘଣ୍ଟାକର୍ଣ୍ଣ ହିଁ କ୍ରୁଦ୍ଧ ହୋଇ ମନୁଷ୍ୟ ଭକ୍ଷଣ କରୁଅଛି ଏବଂ ଘଣ୍ଟା ବଜାଉଅଛି । ଏହା ସ୍ଥିର କରି ସେମାନେ ସେହି ନଗରରୁ ପଳାୟନ କଲେ ।

ବ୍ରହ୍ମପୁରର କରାଳା ନାମ୍ନୀ ଜଣେ ଦୁଷ୍ଟା ସ୍ତ୍ରୀ ମନେ ମନେ ବିବେଚନା କଲା, "ଅସମୟରେ ଏପରି ଘଣ୍ଟା ଶବ୍ଦ ଶୁଭିବାର କାରଣ କଣ ?" ଅଳ୍ପ ଚିନ୍ତା କରି ସ୍ଥିର କଲା, "ହଁ ବୁଝିଲି, ବାନରମାନେ ହିଁ ଏହିପରି ଘଣ୍ଟା ବଜାଉଅଛନ୍ତି ।" ଏହା ସ୍ଥିର କରି ସେ ସ୍ତ୍ରୀ ନିଜେ-ତହିଁର ଅନୁସନ୍ଧାନ କରି ରାଜାଙ୍କୁ ଯାଇ କହିଲା, "ମହାରାଜ, ଯଦି କିଛି ଅର୍ଥ ବ୍ୟୟ କରନ୍ତି, ତାହାହେଲେ ମୁଁ ଘଣ୍ଟାକର୍ଣ୍ଣକୁ ସଂହାର କରି ପାରିବ ।" ରାଜା ସନ୍ତୁଷ୍ଟ ହୋଇ ତାହାକୁ ଧନ ଦାନ କଲେ ।

କରାଳା ନାନାବର୍ଣ୍ଣର ମଣ୍ଡଳରେଖା ରଚନା କରି ତନ୍ମଧ୍ୟରେ ଗଣେଶାଦି ଦେବତାଙ୍କ ପୂଜାର ଆଡ଼ମ୍ବର ଦେଖାଇଲା । ତହିଁ

---

ଜାଣିବ ନିଶ୍ଚୟ ତାର ବିନାଶ ନିକଟ ।

ଉତ୍ତରେ ବାନରଙ୍କ ଲୋଭମୟ କେତେଗୁଡ଼ିଏ ଦ୍ରବ୍ୟ ଧରି ବନମଧ୍ୟକୁ ଗଲା ଏବଂ ସେଠାରେ ସେଗୁଡ଼ିକ ବାଣ୍ଟିଦେଲା । ତାହା ଦେଖି ବାନରଗଣ ଘଣ୍ଟାଟି ଫିଙ୍ଗିଦେଇ ସେହି ପଦାର୍ଥ ଭକ୍ଷଣରେ ଆସକ୍ତ ହେଲେ । ସେହି ସୁଯୋଗରେ କରାଳୀ ଘଣ୍ଟା ଧରି ନଗରକୁ ଫେରିଲା । ସେହି ଘଣ୍ଟା ଦେଖି କରାଳୀଦ୍ୱାରା ଘଣ୍ଟାକର୍ଣ୍ଣ ନିହତ ହୋଇଅଛି ଭାବି ନଗରବାସୀମାନେ ସେହି ଧୂର୍ତ୍ତା ସ୍ତ୍ରୀର ପୂଜା କରିବାକୁ ଲାଗିଲେ ।

ଏହି କାରଣରୁ ହିଁ ମୁଁ କହୁଅଛି ଯେ,

"ଶବ୍ଦ ମାତ୍ର ଶ୍ରବଣରେ ନ କରିବେ ଭୟ,
ଶବ୍ଦର କାରଣ ଅଗ୍ରେ କରିବେ ନିର୍ଣ୍ଣୟ ।"

ଅନନ୍ତର ସେମାନେ ସଞ୍ଜୀବକକୁ ନେଇ ପିଙ୍ଗଳକ ସହିତ ଦେଖା କରାଇଲେ । ପରେ ସେହି ସିଂହ ଓ ବଳଦ ସେହି ବନରେ ବହୁଦିନ ପର୍ଯ୍ୟନ୍ତ ପରମ ସଦ୍ଭାବରେ ବାସ କରିବାକୁ ଲାଗିଲେ ।

ଦିନକରେ ପିଙ୍ଗଳକର ଭ୍ରାତା ସ୍ତବ୍ଧକର୍ଣ୍ଣ ନାମକ ଏକ ସିଂହ ସେଠାକୁ ଆସିଲା । ପିଙ୍ଗଳକ ତାହାକୁ ଅଭ୍ୟର୍ଥନା କରି ଏବଂ ଯଥାଯୋଗ୍ୟ ଆସନରେ ବସାଇ ତାହାର ଭୋଜନାର୍ଥ ପଶୁବଧ କରିବାକୁ ବାହାରିଲା । ଇତ୍ୟବସରେ ସଞ୍ଜୀବକ କହିଲା, "ମହାରାଜ, ଆଜି ଯେଉଁ ସକଳ ପଶୁ ବଧ କରିଥିଲେ, ସେ ସମସ୍ତ ମାଂସ କେଉଁଆଡ଼େ ଗଲା ?"

ପିଙ୍ଗଳକ—ତାହା ଦମନକ ଓ କରଟକ ଜାଣନ୍ତି ।

ସଞ୍ଜୀବକ—ତାହା ଅଛି କି ନାହିଁ ଥରେ ବୁଝନ୍ତୁ ।

---

କଲେ ହେଁ ତାହାକୁ କେତେ ଯତନେ ପାଳନ;

ସିଂହ ହାସ୍ୟକରି କହିଲା, "ତାହା ନଷ୍ଟପ୍ରାୟ ନାହିଁ ।"

ସଞ୍ଜୀବକ—ଏତେଗୁଡ଼ାଏ ମାଂସ ସେମାନେ କିପରି ଖାଇଦେଲେ ?

ପିଙ୍ଗଳକ—ଖାଇଲେ, କିଛି ବାଣ୍ଟିଦେଲେ, ଅବଶିଷ୍ଟ ଫିଙ୍ଗିଦେଲେ । ସେମାନେ ପ୍ରତ୍ୟହ ଏପରି ହିଁ କରିଥାନ୍ତି ।

ସଞ୍ଜୀବକ—ସେମାନେ ରାଜଶ୍ରୀଙ୍କୁ ନ ଜଣାଇ ଏପରି କରନ୍ତି ?

ପିଙ୍ଗଳକ—ହଁ ମୋତେ ନ କହି ଏପରି କରନ୍ତି ।

ସଞ୍ଜୀବକ—ସେମାନଙ୍କର ଏପରି କରିବା ଅତ୍ୟନ୍ତ ଅନ୍ୟାୟ ।

କଥିତ ଅଛି ଯେ, ପ୍ରଭୁଙ୍କ ବିନାନୁମତିରେ ଭୃତ୍ୟର କୌଣସି କାର୍ଯ୍ୟ କରିବା ଅନୁଚିତ; କିନ୍ତୁ ପ୍ରଭୁଙ୍କ ବିପଦବେଳେ ତାଙ୍କ ବିନାନୁମତିରେ ସୁଦ୍ଧା ତାଙ୍କର ଉଦ୍ଧାର ଚେଷ୍ଟା କରିବା ବିଧେୟ । ମନ୍ତ୍ରୀ କମଣ୍ଡଳୁ ସଦୃଶ ବସ୍ତୁର ନିଏ ଏବଂ ଅତ୍ୟଳ୍ପ ମାତ୍ର ଢାଳେ । ଯେଉଁ ବ୍ୟକ୍ତି ସମୟର ସଦ୍‌ବ୍ୟୟ ଜାଣେ ନାହିଁ, ସେପରି ମୂର୍ଖକୁ ଏବଂ ଯେ କେବେ ଟଙ୍କା ଦେଖିନାହିଁ, ଟଙ୍କାର ମର୍ଯ୍ୟାଦା ବୁଝିନାହିଁ, ସେପରି ଦରିଦ୍ରକୁ ମନ୍ତ୍ରିପଦରେ ନିଯୁକ୍ତ କରିବା ବୁଦ୍ଧିମାନ୍ ରାଜାର କାର୍ଯ୍ୟ ନୁହେଁ । ଅର୍ଥ ହିଁ ରାଜ୍ୟର ପ୍ରାଣ, ଅର୍ଥ ବିନା ରାଜପଦର ମୂଲ୍ୟ ନାହିଁ ଏବଂ ରାଜ୍ୟର ମର୍ଯ୍ୟାଦା ନାହିଁ । ଅତଏବ ଯେ ରାଜକୋଷର ବୃଦ୍ଧି ସକାଶେ ଯତ୍ନବାନ୍ ହୁଏ, ସେହି ବ୍ୟକ୍ତି ହିଁ ରାଜାର ପରମହିତୈଷୀ ମନ୍ତ୍ରୀ ।

ଦେଖନ୍ତୁ, ଉତ୍ତମ କୁଳାଙ୍କୁର ଥିଲେ ମଧ୍ୟ ଯାହା ନିକଟରେ ଧନ ନାହିଁ, ସେପରି ଲୋକର କିଏ ସେବା କରେ ? ଧନ ନ ଥିଲେ

---

ନ ଛାଡ଼େ କଦାପି ତାର ସ୍ୱଭାବ ଦୁର୍ଜ୍ଜନ ।

ସ୍ତ୍ରୀ ନିଜ ପତିକୁ ସୁଦ୍ଧା ଅବମାନିତ କରେ । ନିର୍ଦ୍ଧନ ବ୍ୟକ୍ତିକୁ ତାହାର ନିଜ ଗୃହିଣୀ ତ୍ୟାଗ କରୁଥିବା ସ୍ଥଳରେ, ଅନ୍ୟଲୋକେ ଯେ ତାହାକୁ ଅନାଦର କରିବେ ଏହା ଅସମ୍ଭବ ନୁହେ । ପୁଣି, ଅତିବ୍ୟୟ, ଅପଳାପ, ଅଯତ୍ନ, ଅଧର୍ମ ଉପାୟରେ ଅର୍ଥୋପାର୍ଜ୍ଜନ ଏବଂ ସୁଦୂରରେ ଧନସ୍ଥାପନ—ଏହି ସକଳ ଦୋଷରେ ରାଜାର ଧନାଗାର ନଷ୍ଟ ହୁଏ । ଆୟ ଦେଖି ବ୍ୟୟ କରିବା ରାଜାର ଧର୍ମ । ଯେଉଁ ରାଜା ସ୍ୱେଚ୍ଛାମତେ ଧନ ବ୍ୟୟ କରେ ସେ କୁବେର ତୁଲ୍ୟ ଧନବାନ୍ ହେଲେ ହେଁ ଶୀଘ୍ର ସର୍ବସ୍ୱାନ୍ତ ହୋଇ କଷ୍ଟ ଭୋଗ କରେ ।

ତାହା ଶୁଣି ସ୍ତବ୍ଧକର୍ଣ୍ଣ କହିଲା, "ଭାଇ, ଶୁଣ, ତୁମ୍ଭର ପୁରାତନ ଭୃତ୍ୟ ଏହି ଦମନକ ଓ କରଟକ ସନ୍ଧି ଓ ବିଗ୍ରହ କାର୍ଯ୍ୟରେ ନିଯୁକ୍ତ (ଅଛନ୍ତି । ଏମାନଙ୍କ ଉପରେ ଧନଭାର ଦେବା ଅନୁଚିତ । କପଟି ଲୋକକୁ ଧନାଧିକାରରେ ନିଯୁକ୍ତ) କରିବାକୁ ହେବ, ସେହି ବିଷୟରେ ମୁଁ ଯାହା ଶୁଣିଅଛି, ତାହା କହୁଅଛି ଶୁଣ—ବ୍ରାହ୍ମଣ ହସ୍ତରେ ଧନଭାର ଦେବା ଅନୁଚିତ, କାରଣ ସେ ଦାନ କରିବାକୁ ସର୍ବଦା କୁଣ୍ଠିତ ହୁଏ । କ୍ଷତ୍ରିୟ ପ୍ରତି ଧନଭାର ନ୍ୟସ୍ତ କରିବା ଅବିଧେୟ, ଯେହେତୁ ସେ ପଦେ ପଦେ ଖଡ୍ଗହସ୍ତ ହୋଇ ଉଠେ । ଜ୍ଞାତିକୁ ଧନଭାର ଦେବା ନିରାପଦ ନୁହେଁ, କାରଣ ସେ ବନ୍ଧୁଭାବରେ ସର୍ବଗ୍ରାସ କରିବସେ । ପୁରାତନ ଭୃତ୍ୟକୁ ଧନାଧିକାରରେ ନିଯୁକ୍ତ କଲେ ସେ ପ୍ରଭୁଙ୍କୁ ନ ମାନି ସ୍ୱେଚ୍ଛାଚାର କରେ ଏବଂ ଅପରାଧ କରି ସୁଦ୍ଧା ଭୀତ ହୁଏ ନାହିଁ । ଯଦି ଉପକାରୀ ବ୍ୟକ୍ତି ହସ୍ତରେ ଧନଭାର ଅର୍ପିତ ହୁଏ, ତାହାହେଲେ ସେ ଆପଣାର ଦୋଷ ଗଣନା କରେ ନାହିଁ ଏବଂ ନିଜେ

---

ଖଳର ଛୁତୁଷ-ଜାଲେ ହୋଇଣ ପତିତ,

ଉପକାର କରିବା କଥା ସର୍ବସ୍ୱ ହରଣ କରିଥାଏ । ଗୁପ୍ତ ଆମୋଦ-ସଙ୍ଗୀ ହସ୍ତରେ ଧନଭାର ଦେବା ରାଜାର ଅନୁଚିତ, କାରଣ ସେ ରାଜା ତୁଲ୍ୟ ପ୍ରଭୁତ୍ୱ ଦେଖାଏ ଏବଂ ଅତି ପରିଚୟ ଯୋଗୁଁ ରାଜାପ୍ରତି ଭ୍ରୂକ୍ଷେପ କରେ ନାହିଁ । ଯେଉଁ ମନ୍ତ୍ରୀ ବାହାରେ ସାଧୁଭାବ ଦେଖାଇ ଗୁପ୍ତଭାବରେ ଶଠତା ଆଚରଣ କରେ, ସେ ରାଜାର ଯେ ସର୍ବନାଶ ଘଟାଏ, ଏଥିରେ ସଂଶୟର କାରଣ ନାହିଁ । ତାହାର ଦୃଷ୍ଟାନ୍ତ ସ୍ୱରୂପ, ଶକୁନି ଓ ଶକଟାରଙ୍କ ବିଷୟ ଆଲୋଚନା କରାଯାଉ । ଶକୁନି କୁରୁରାଜ ଦୁର୍ଯ୍ୟୋଧନଙ୍କ ମାତୁଳ ଓ ମନ୍ତ୍ରୀ ଥିଲା । ତାହାର କୁମନ୍ତ୍ରଣା ଶୁଣିବାରୁ ପରିଶେଷରେ ଦୁର୍ଯ୍ୟୋଧନଙ୍କର ସର୍ବନାଶ ଘଟିଥିଲା । ଶକଟାର ନନ୍ଦରାଜାଙ୍କର ମନ୍ତ୍ରୀ ଥିଲା । ଚାଣକ୍ୟ ଯେତେବେଳେ କ୍ରୁଦ୍ଧ ହୋଇ ନନ୍ଦବଂଶ ଧ୍ୱଂସ କରିବାକୁ କୃତସଂକଳ୍ପ ହେଲେ, ସେତେବେଳେ କୃତଘ୍ନ ଶକଟାର ଗୋପନରେ ଚାଣକ୍ୟଙ୍କ ଷଡ଼ଯନ୍ତ୍ରରେ ଯୋଗ ଦେଇ ନନ୍ଦରାଜାଙ୍କର ସର୍ବନାଶ କରିଥିଲା ।

"ଯେଉଁ ଭୃତ୍ୟ ଆପଣା ହସ୍ତରେ ବହୁ ଧନ ପାଏ, ତାହାକୁ ନ୍ୟାୟ-ପଥରେ ରଖିବା କଷ୍ଟକର । ସିଦ୍ଧପୁରୁଷମାନଙ୍କ ମତରେ, ଧନପ୍ରାପ୍ତି ସଙ୍ଗେ ସଙ୍ଗେ ବୁଦ୍ଧିବିପର୍ଯ୍ୟୟ ଘଟେ । ଯେଉଁ ମନ୍ତ୍ରୀ ରାଜକୋଷରୁ ବହୁମୂଲ୍ୟ ରତ୍ନାଦି ଆତ୍ମସାତ୍ କରି ତାହା ବଦଳରେ ଅଳ୍ପମୂଲ୍ୟର ସେହି ପ୍ରକାର କୌଣସି ଦ୍ରବ୍ୟ ସେହି ସ୍ଥାନରେ ରଖେ, ଯେ ଆତ୍ମୀୟମାନଙ୍କର ଉପରୋଧ ରକ୍ଷାକରେ, ପ୍ରଭୁର ସ୍ୱାର୍ଥ ପ୍ରତି ଯାହାର ଅଯତ୍ନ ଦେଖାଯାଏ, ଯେ କେବଳ ନିଜର ସୁଖ ଖୋଜିବସେ ଏବଂ ଯେ ବୁଦ୍ଧିହୀନ, ସେପରି ମନ୍ତ୍ରୀ ହସ୍ତରେ ଧନଭାର ଅର୍ପଣ କରିବା ଦ୍ୱାରା ରାଜାର କ୍ଷତି ଭିନ୍ନ ଶ୍ରେୟଃ ନାହିଁ ।

---

କିଏ ବା ହୋଇଛି କେବେ ବିପଦୁଁ ରକ୍ଷିତ ?

ଯେଉଁ କର୍ମଚାରୀମାନଙ୍କ ହସ୍ତରେ ଆୟବ୍ୟୟ ଭାର ନ୍ୟସ୍ତ ଥାଏ, ସେମାନଙ୍କ କାର୍ଯ୍ୟ ପ୍ରତି ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଦେବା ରାଜାର ପ୍ରଧାନ କର୍ତ୍ତବ୍ୟ । କୌଣସି କର୍ମଚାରୀକୁ ଏକପଦରେ ଓ ଏକ ସ୍ଥାନରେ ବହୁକାଳ ରଖିବା ଅନୁଚିତ । ସମୟ ସମୟରେ ସେହି ପଦରେ ଅନ୍ୟ ଲୋକକୁ ରଖି ତାହାକୁ ଅନ୍ୟ ପଦରେ ନିଯୁକ୍ତ କରିବା ବିଧେୟ, ନୋହିଲେ କର୍ମଚାରୀମାନଙ୍କର ଅନ୍ୟାୟ କର୍ମ ଧରା ପଡ଼େ ନାହିଁ ।

"ନରପତି ଏହିରୂପ କରିଣ ଉପାୟ,
ରାତିମତି ନିଜ ଅର୍ଥ କରିବ ଆଦାୟ ।"

ଅଦ୍ଭୁତ ଦେଖନ୍ତୁ, ଦୂଷିତ ବ୍ରଣ ତୁଲ୍ୟ କର୍ମଚାରୀଗଣ ବିନା ନିପୀଡ଼ନରେ ସଂର ଭାଗ ବିଅନ୍ତି ନାହିଁ । ସ୍ନାନାର୍ଦ୍ର ବସ୍ତ୍ର ବାର ବାର ଯେତେ ଜୋରରେ ନିଷ୍ପୀଡ଼ିତ ହୁଏ, ତେତେ ତହିଁରୁ ଜଳ ନିଃସୃତ ହେଉଥାଏ । ସେପରି ରାଜା କର୍ମଚାରୀମାନଙ୍କୁ ଯେତେ ପୀଡ଼ନ କରିବେ, ସେମାନଙ୍କ ନିକଟରୁ ତାଙ୍କର ଧନ ତେତେ ଆଦାୟ ହେବ ।

"ଏହି ସମସ୍ତ ବିଷୟ ବିଶେଷରୂପେ ଜ୍ଞାତ ହୋଇ କର୍ମଚାରୀମାନଙ୍କ ପ୍ରତି ଯେତେବେଳେ ଯେପରି ବ୍ୟବହାର କରିବା ଉଚିତ, ତାହା କରିବ ।"

ପିଙ୍ଗଳକ—ହଁ, ଏହି ସମସ୍ତ ବିଷୟ ସତ୍ୟ; କିନ୍ତୁ ଦମନକ ଓ କରଟକ କୌଣସିମତେ ମୋ ଆଦେଶ ପାଳନ କରନ୍ତି ନାହିଁ ।

---

ଖଳର ପ୍ରକୃତି ବନ୍ଧୁ ଅଛୁ କେ ଜଗତେ;

ସ୍ତବ୍ଧକର୍ଣ୍ଣ—ଏହା ଅତ୍ୟନ୍ତ ଦୋଷାବହ । ଆଦେଶ ନ ମାନିଲେ ନିଜ ପୁତ୍ର ପ୍ରତି ସୁଦ୍ଧା ଲେଶମାତ୍ର ଦୟା ଦେଖାଇବ ନାହିଁ । ରାଜାର ଆଦେଶ ଯଦି ରକ୍ଷା କରା ନ ଗଲା, ତେବେ ଚିତ୍ରପଟ-ଅଙ୍କିତ ରାଜା ଓ ଜୀବନ୍ତ ରାଜା ମଧ୍ୟରେ ପ୍ରଭେଦ କଣ ? ଯେଉଁ ବ୍ୟକ୍ତି ଗର୍ବିତ ହୁଏ ତାହାର ଯଶ ଲୋପ ପାଏ, ଯେ ସ୍ୱାର୍ଥପର ହୁଏ ତାହାର ଧର୍ମ ନଷ୍ଟ ହୁଏ, ଏବଂ ଯେ ବହୁତ ଖରଚ କରେ ସେ ବନ୍ଧୁତା ହରାଏ । ମନୁଷ୍ୟ ଇନ୍ଦ୍ରିୟ ସଂଯତ କରି ନ ପାରିଲେ କୁପଥରେ ପଡ଼ି କୁଳମାନ ହରାଏ ।

"ନ ରହେ ବିଦ୍ୟାର ଫଳ ରହିଲେ ବ୍ୟସନ,
ନ ରହେ କୌଣସି ସୁଖ ହୋଇଲେ କୃପଣ ।"

ଯେଉଁ ରାଜ୍ୟର ମନ୍ତ୍ରୀ ସ୍ୱେଚ୍ଛାଚାର କରେ, ସେହି ରାଜ୍ୟର ପତନ ଅନିବାର୍ଯ୍ୟ । ବିଶେଷତଃ ରାଜାର ନିଯୁକ୍ତ ଲୋକ, ପ୍ରିୟପାତ୍ର, ବିପକ୍ଷ, ତସ୍କର ଏବଂ ନିଜର ଲୋଭ, ଏହି ସକଳଠାରୁ ରାଜା ଆପଣାର ପ୍ରଜାଗଣଙ୍କୁ ସର୍ବଦା ପିତୃବତ୍ ଉଦ୍ଧାର କରିବ ।

ଭାଇ, ମୁଁ ଯଥା ରାଜକାର୍ଯ୍ୟ କରେଁ । ଅତଏବ ଏହି ସମସ୍ତ ବିଷୟରେ ମୋ ଉପଦେଶମତେ କାର୍ଯ୍ୟ କର । ସଞ୍ଜୀବକ ଶସ୍ୟଭୋଜୀ, ଏହାଙ୍କ ହସ୍ତରେ ଭକ୍ଷ୍ୟଦ୍ରବ୍ୟର ଭାର ଦିଅ ।

ପିଙ୍ଗଳକ ସ୍ତବ୍ଧକର୍ଣ୍ଣର ଉପଦେଶ ସାଦରେ ପାଳନ କଲା । ସେହିଦିନଠାରୁ ପିଙ୍ଗଳକ ଓ ସଞ୍ଜୀବକ ସକଳ ବନ୍ଧୁ ପରିତ୍ୟାଗ କରି ପରମପ୍ରୀତିରେ କାଳଯାପନ କରିବାକୁ ଲାଗିଲେ । ଅନନ୍ତର ଆଶ୍ରିତ ସେବକଗଣଙ୍କର ଆହାର ଦାନରେ ସୁଦ୍ଧା ଅଯତ୍ନ

---

ଗର୍ବର ଉଦୟ ହୁଏ ନାହିଁ କାର ବିତ୍ତେ ?

କରିବାର ଦେଖି ଦମନକ ଓ କରଟକ ପରସ୍ପର ମନ୍ତ୍ରଣା କଲେ । ଦମନକ କହିଲା, "ମିତ୍ର ! ବର୍ତ୍ତମାନ ଏହି ବିଷୟରେ କର୍ତ୍ତବ୍ୟ କଣ ? ଏହି ଦୋଷ ତ ମୋର, ନିଜେ ଦୋଷ କରି ଅନୁତାପ କରିବା ମଧ୍ୟ ଅନୁଚିତ । ସ୍ୱର୍ଣ୍ଣରେଖା ସ୍ପର୍ଶକରି ରାଜପୁତ୍ରର ଯେପରି ଦୁର୍ଗତି ଘଟିଥିଲା, ନାପିତ ସ୍ତ୍ରୀ ନିଜେ ସ୍ତମ୍ଭବଦ୍ଧ ହୋଇ ଯେପରି ବିପାକରେ ପଡ଼ିଥିଲା ଏବଂ ମଣିଲୋଭରେ ଯେପରି ସାଧୁ ସର୍ବସ୍ୱ ହରାଇଥିଲା, ମୁଁ ସେପରି ଆପଣା କର୍ମଦୋଷରେ କଷ୍ଟ ଭୋଗ କରୁଅଛି; ତେବେ ଅନୁତାପ କଲେ ହେବ କଣ ?"

କରଟକ—ସଖେ, ସେହି ରାଜପୁତ୍ର, ନାପିତ ସ୍ତ୍ରୀ ଓ ସାଧୁର କଥା ଶୁଣିବାକୁ ମୁଁ ଇଚ୍ଛା କରେଁ ।

ଦମନକ— ତେବେ ଶୁଣ—

—— ——

## ରାଜପୁତ୍ର, ନାପିତପତ୍ନୀ, ସାଧୁ

କାଞ୍ଚନପୁର ବୋଲି ଏକ ନଗର ଅଛି । ସେଠାରେ ବୀର-ବିକ୍ରମ ନାମକ ଏକ ରାଜା ଅଛନ୍ତି । ଦିନେ ତାଙ୍କର ଧର୍ମାଧିକାରୀ ଜଣେ ନାପିତକୁ ବଧଭୂମିକୁ ଧରି ଯାଉଅଛନ୍ତି, ଏହିସମୟରେ କନ୍ଦର୍ପକେତୁ ନାମକ ଜଣେ ପରିବ୍ରାଜକ ଏକ ସାଧୁ ସହିତ ସେଠାରେ ଉପସ୍ଥିତ ହୋଇ କହିଲେ, "ଏହି ବ୍ୟକ୍ତି ଅପରାଧୀ ନୁହେଁ, ଏହାକୁ ହତ୍ୟା କର ନାହିଁ ।" ଏହା କହି ସେ ନାପିତର ବସ୍ତ୍ରାଞ୍ଚଳ ଧାରଣ କଲେ । ରାଜପୁରୁଷଗଣ ଜିଜ୍ଞାସା କଲେ, 'ଏହି ବ୍ୟକ୍ତି କେଉଁ କାରଣରୁ ବଧଯୋଗ୍ୟ ନୁହେଁ ?'

---

ଖଳର ସଂସର୍ଗ କରେ ମହା ଅପକାର;

ପରିବ୍ରାଜକ କହିଲେ, "ଶ୍ରବଣ କର । ସ୍ୱର୍ଣ୍ଣରେଖା ସ୍ପର୍ଶ କରି ମୋର ଏପରି ଦୁର୍ଗତି ଘଟିଥିଲା ।" ରାଜପୁରୁଷଗଣ କହିଲେ, "ତାହା କଣ କହନ୍ତୁ ।"

ପରିବ୍ରାଜକ କହିଲେ—

---

## (କ) ରାଜପୁତ୍ରର ଆତ୍ମବୃତ୍ତାନ୍ତ

ମୁଁ ସିଂହଳର ରାଜା ଜୀମୂତକେତୁଙ୍କ ପୁତ୍ର, ମୋର ନାମ କନ୍ଦର୍ପକେତୁ । ମୁଁ ଦିନକରେ କେଳିକାନନରେ ଅବସ୍ଥାନ କରୁଅଛି, ଏପରି ସମୟରେ ଜଣେକ ପୋତବଣିକ ସେଠାକୁ ଆସି କହିଲା, "ଚତୁର୍ଦ୍ଦଶୀ ଦିନ ଏକ ସମୁଦ୍ରରୁ ଗୋଟିଏ କଳ୍ପବୃକ୍ଷ ଉଠିଥାଏ । ଏହି ବୃକ୍ଷ ତଳରେ ବିବିଧ ମଣିମାଣିକ୍ୟପ୍ରଭା ରଞ୍ଜିତ ଏକ ପର୍ଯ୍ୟଙ୍କ ଉପରେ ବସି ସର୍ବାଳଙ୍କାରଭୂଷିତା ସାକ୍ଷାତ୍ ଲକ୍ଷ୍ମୀ ତୁଲ୍ୟ ଜଣେ ସ୍ତ୍ରୀ ବୀଣାବାଦନ କରିଥାଏ ।" ଅନନ୍ତର ମୁଁ ସେହି ପୋତବଣିକକୁ ସଙ୍ଗେ ଧରି ଯାଇ ତରୀ ଆରୋହଣରେ ସେହି ସ୍ଥାନ ପ୍ରତି ଯାତ୍ରା କଲି । ସେଠାକୁ ଯାଇ ଦେଖିଲି, ପୋତବଣିକ ଯେପରି କହିଥିଲା, ସେହି ସ୍ତ୍ରୀ ଠିକ୍ ସେହିପରି ଦେଖାଗଲା । ମୁଁ ସେହି ରମଣୀର ଅପୂର୍ବ ରୂପଲାବଣ୍ୟରେ ବିମୁଗ୍ଧ ହୋଇ; ସମୁଦ୍ର-ଜଳରେ ଲମ୍ଫ ଦେଇ ସେହି ସ୍ତ୍ରୀ ସଙ୍ଗରେ ନିମଗ୍ନ ହେଲି । ତା'ପରେ ଦେଖିଲି, ଏକ ସୁବର୍ଣ୍ଣମୟୀ ପୁରୀ ମଧ୍ୟରେ ଯାଇ ଉପସ୍ଥିତ ହୋଇଅଛି । ଦେଖିଲି, ସେଠାରେ ସ୍ୱର୍ଣ୍ଣ ଅଟ୍ଟାଳିକା ମଧ୍ୟରେ ସେହି କନ୍ୟା ସେପରି ପର୍ଯ୍ୟଙ୍କରେ ବସିଅଛି ଏବଂ ଚତୁର୍ଦ୍ଦିଗରେ ନବଯୁବତୀ ବିଦ୍ୟାଧରୀଗଣ ତାହାର ସେବାରେ ନିଯୁକ୍ତ ଅଛନ୍ତି । କନ୍ୟା ମୋତେ ଦେଖିବା ମାତ୍ରେ

---

ଜ୍ୱଳନ୍ତ ଅନଳ ତୁଲ୍ୟ କରେ ଛୁରଖାର ।

ସହଚରୀ ପଠାଇ ପରମ ସମାଦରରେ ମୋର ଅଭ୍ୟର୍ଥନା କଲା । ମୁଁ ସେହି ସହଚରୀଙ୍କୁ ଜିଜ୍ଞାସା କରିବାରୁ ସେ କହିଲା; "ଏହି ସ୍ତ୍ରୀ କନ୍ଦର୍ପକେଳି ନାମକ ବିଦ୍ୟାଧର-ଚକ୍ରବର୍ତ୍ତୀଙ୍କ କନ୍ୟା, ଏହାଙ୍କ ନାମ ରତ୍ନମଞ୍ଜରୀ । ଏ ଏହି ପଣ କରିଅଛନ୍ତି ଯେ, 'ଯେଉଁ ବ୍ୟକ୍ତି ଏହି ସ୍ଥାନକୁ ଆସି ଏହି ସୁବର୍ଣ୍ଣପୁରୀ ଦର୍ଶନ କରିବ, ମୁଁ ତାହାକୁ ହିଁ ବରମାଲ୍ୟ ପ୍ରଦାନ କରିବି ।' ଅତଏବ ଆପଣ ଏହାଙ୍କୁ ଗନ୍ଧର୍ବ-ବିଧାନରେ ପତ୍ନୀରୂପେ ଗ୍ରହଣ କରନ୍ତୁ ।"

ଗନ୍ଧର୍ବବିଧାନରେ ବିବାହକାର୍ଯ୍ୟ ସମ୍ପନ୍ନ ହେବା ଉତ୍ତାରେ ମୁଁ ସେଠାରେ ତାହା ସହିତ ପରମାନନ୍ଦରେ ବହୁଦିନ ଅତିବାହିତ କଲି । ଏକଦିନ ବିଦ୍ୟାଧର-ନନ୍ଦିନୀ ଗୋପନରେ ମୋତେ କହିଲା, "ନାଥ, ଆପଣ ଏହି ସ୍ଥାନର ସମସ୍ତ ପଦାର୍ଥ ଇଚ୍ଛାମତ ଉପଭୋଗ କରନ୍ତୁ, କେବଳ (ଏକ ଚିତ୍ରପଟ ଦେଖାଇ) ଏହି ଯେ ଚିତ୍ରପଟରେ ସ୍ୱର୍ଣ୍ଣରେଖା ନାମ୍ନୀ ବିଦ୍ୟାଧରୀ ଚିତ୍ରିତ ହୋଇଅଛି ଏହା କଦାଚ ସ୍ପର୍ଶ କରିବେ ନାହିଁ ।"

ଏକଦା ନିତାନ୍ତ କୁତୂହଳାକ୍ରାନ୍ତ ହୋଇ ମୁଁ ସେହି ଚିତ୍ରପଟ ଖଣ୍ଡିକ ହସ୍ତରେ ସ୍ପର୍ଶକଲି । ତାହା କରିବାକ୍ଷଣି, ସେହି ଚିତ୍ରିତ ପ୍ରତିମୂର୍ତ୍ତି ସଜୀବ ହୋଇ ମୋତେ ଏପରି ପଦାଘାତ କଲା ଯେ, ମୁଁ ଏକାବେଳକେ ନିଜ ରାଜ୍ୟରେ ଆସି ପଡ଼ିତ ହେଲି । ଅନନ୍ତର, ମୁଁ ସେହି ବିଦ୍ୟାଧର-କନ୍ୟାର ବିରହ-ଶୋକରେ ଅଧୀର ହୋଇ ସଂସାର ତ୍ୟାଗ କରି ସନ୍ନ୍ୟାସୀ-ବେଶରେ ବୁଲୁଅଛି । ପୃଥିବୀର ନାନା ସ୍ଥାନ ପର୍ଯ୍ୟଟନ କରି ବର୍ତ୍ତମାନ ଏହି ନଗରରେ ଆସି ଉପସ୍ଥିତ ହୋଇଅଛି ।

---

## (ଖ) ନାପିତ ସ୍ତ୍ରୀର ନାସିକା-ଛେଦନ

ଏହି ସ୍ଥାନରେ ଗତ ଦିବସ ଏକ ଗଉଡ଼ ଗୃହରେ ବିଶ୍ରାମ କରିବା ସମୟରେ ଦେଖିଲି—ସନ୍ଧ୍ୟାବେଳେ ଗଉଡ଼ ଗୋଷ୍ଠରୁ ଗୃହକୁ ଫେରିଲା । ସେ ଦେଖିଲା ଯେ ତାହାର ସ୍ତ୍ରୀ ଏକ ଦୁଷ୍ଟଚରିତ୍ରା ନାପିତ ସ୍ତ୍ରୀ ସହିତ କ'ଣ ମନ୍ତ୍ରଣା କରୁଅଛି । ତାହା ଦେଖି ସେ ସ୍ତ୍ରୀକୁ ପ୍ରହାର କଲା ଏବଂ ତାହାକୁ ଏକ ସ୍ତମ୍ଭରେ ବନ୍ଧନ କରିରଖି ଶୟନ କଲା । ତା ପରେ, ଦୁଇ ପ୍ରହର ରାତିରେ ସେହି ନାପିତ ସ୍ତ୍ରୀ ପୁନରାୟ ଗଉଡ଼ୁଣୀ ନିକଟକୁ ଯାଇ କହିଲା, 'କେତେକ୍ଷଣ ତୁମେ ଏହି ସ୍ତମ୍ଭରେ ମୋତେ ବନ୍ଧନ କରି ମୁକ୍ତିଲାଭ କର । କିୟତ୍କ୍ଷଣ ପରେ ଆସି ମତେ ମୁକ୍ତ କରିବ ।'

ନାପିତପତ୍ନୀର ଉପଦେଶ ତତ୍କ୍ଷଣାତ୍ ପାଳିତ ହେଲା । କିଛି ସମୟ ପରେ ଗଉଡ଼ ଜାଗରିତ ହୋଇ ପତ୍ନୀ-ବୋଧରେ ନାପିତସ୍ତ୍ରୀକୁ ସମ୍ବୋଧନ କରି କହିଲା, "କାହିଁ, ଏବେ ତୋ ସଖୀ ଆସି ତତେ ଉଦ୍ଧାର କଲା ନାହିଁ ?" ନାପିତ-ପତ୍ନୀ ଏହି କଥାର କୌଣସି ଉତ୍ତର ନ ଦେବାରୁ ଗଉଡ଼ କ୍ରୁଦ୍ଧ ହୋଇ କହିଲା, 'କି, ତୋର ଏତେ ଆସ୍ପର୍ଦ୍ଧା । ମୋ କଥାର ଉତ୍ତର୍ ଦେଉନାହୁଁ !' ଏହା କହି ସେ ଖଣ୍ଡିଏ କ୍ଷୁର ଆଣି ନାପିତ-ସ୍ତ୍ରୀର ନାସିକା ଛେଦନ କରି ପୁନର୍ବାର ନିଦ୍ରା ଗଲା । ତା ପରେ, ଗଉଡ଼ୁଣୀ ଆସି ନାପିତ ସ୍ତ୍ରୀକୁ ଜିଜ୍ଞାସା କଲା, "ସମ୍ବାଦ କଣ ?" ସେ କହିଲା, "ମୋ ମୁଖ ଦେଖିଲେ ସମସ୍ତ ବିଷୟ ବୁଝିପାରିବୁ । ଗଉଡ଼ୁଣୀ ତାହାର କର୍ତ୍ତିତ ନାସିକା ଦେଖି ନିତାନ୍ତ ଦୁଃଖିତ ହେଲା ଏବଂ ତାହାକୁ ମୁକ୍ତ କରି

ସମ୍ପଦର ପଥ ହୁଏ ଇନ୍ଦ୍ରିୟ ସଂଯମ ।

ପୂର୍ବପରି ନିଜେ ସ୍ତମ୍ଭବଦ୍ଧ ହୋଇ ରହିଲା । ନାପିତ ସ୍ତ୍ରୀ ନିଜର ଛିନ୍ନ ନାସିକା ଧରି ସ୍ୱଗୃହକୁ ପ୍ରସ୍ଥାନ କଲା ।

ପରଦିନ ପ୍ରାତଃକାଳରେ ନାପିତ ଯେତେବେଳେ ନିଜ ସ୍ତ୍ରୀକୁ କ୍ଷୁରଖଣ୍ଡ ଆଣିବାକୁ କହିଲା, ସେତେବେଳେ ସେହି ନାପିତ ପତ୍ନୀ କ୍ଷୁର ପେଡ଼ିଟି ନ ଦେଇ କେବଳ ଖଣ୍ଡିଏ କ୍ଷୁର ଦୂରରୁ ସ୍ୱାମୀ ନିକଟକୁ ଫିଙ୍ଗିଦେଲା । ସ୍ତ୍ରୀର ଏହି ବ୍ୟବହାରରେ ନାପିତ କ୍ରୁଦ୍ଧ ହୋଇ ସେହି କ୍ଷୁର ନେଇ ଦୂରରୁ ଗୃହ ମଧ୍ୟକୁ ନିକ୍ଷେପ କଲା । ନାପିତ-ପତ୍ନୀ ତତ୍‌କ୍ଷଣାତ୍ ଚିତ୍କାର କରି କାନ୍ଦି ଉଠିଲା ଏବଂ ସମସ୍ତଙ୍କୁ କହିଲା, "ଦେଖ, ମୋ ପତି ବିନାପରାଧରେ ମୋ ନାକ କାଟିଅଛି ।" ସେ ଯାଇ ବିଚାରାଳୟରେ ନିଜ ପତି ବିରୁଦ୍ଧରେ ଅଭିଯୋଗ ଆଗତ କଲା । ନାପିତ ଅତି ଶୀଘ୍ର ବିଚାରପତି ସମ୍ମୁଖକୁ ଆହୂତ ହେଲା ।

ଏଣେ ସେହି ଗଉଡ଼ ପୁନରାୟ ଉଠି ଗଉଡ଼ୁଣୀକୁ ପୂର୍ବପରି ଧମକାଇବାରୁ ଗଉଡ଼ୁଣୀ କହିଲା, "କାହାର ସାଧ୍ୟ ମୋ ପରି ପରମ ସତୀକୁ ଅସ୍ୱାଘାତରେ ଅଙ୍ଗହୀନ କରିପାରିବ ? ମୁଁ କିପରି ସତୀ, ତାହା ଅଷ୍ଟଲୋକପାଳଗଣ ଜାଣନ୍ତି । କାରଣ, ସୂର୍ଯ୍ୟ, ଚନ୍ଦ୍ର, ଯମ, ଅଗ୍ନି, ଦିବସ, ରାତି; ସନ୍ଧ୍ୟା, ଜଳ, ବାୟୁ, ସ୍ୱର୍ଗ, ମର୍ତ୍ତ୍ୟ, ଧର୍ମ ଏବଂ ନିଜ ହୃଦୟ—ଏମାନେ ସର୍ବଦା ମନୁଷ୍ୟ-କର୍ମର ସାକ୍ଷୀ ହୋଇଥାନ୍ତି । ଅତଏବ ମୁଁ ଯଦି ଯଥାର୍ଥରେ ସତୀ ହୋଇଥାଏ, ଯଦି ମନରେ ସୁଦ୍ଧା ପତି ଭିନ୍ନ ଅନ୍ୟ କୌଣସି ପୁରୁଷକୁ ସ୍ଥାନ ଦେଇ ନ ଥାଏ, ତାହାହେଲେ ଏହିକ୍ଷଣରେ ହିଁ ମୋର ଛିନ୍ନ ନାସିକା ପୂର୍ଣ୍ଣାଙ୍ଗ ହେଉ ।"

---

ଘୃଣାଶୀଳ, ଈର୍ଷାଶୀଳ, ରାଗରେ ଅଥୟ;

ତହିଁ ଉତ୍ତରରେ ଗଉଡ଼ ଦୀପ ଆଣି ଦେଖିଲା ଯେ, ସ୍ତ୍ରୀର ମୁଖରେ ଆଘାତର ଚିହ୍ନ ସୁଦ୍ଧା ନାହିଁ । ସେତେବେଳେ ସେ ପତ୍ନୀର ପଦତଳରେ ନିପତିତ ହୋଇ କ୍ଷମା ଭିକ୍ଷା କଲା ।

ମୋ ସଙ୍ଗରେ ଏହି ଯେ ସାଧୁଙ୍କୁ ଦେଖୁଅଛ, ଏହାଙ୍କର ବୃତ୍ତାନ୍ତ ମଧ୍ୟ ଶ୍ରବଣ କର—

---

## (ଗ) ସାଧୁର ଲୋଭ

ଏହି ସାଧୁ ବାର ବର୍ଷ ହେଲା ଗୃହରୁ ବହିର୍ଗତ ହୋଇ ବର୍ତ୍ତମାନ ମଳୟାଚଳ ନିକଟରୁ ଆସି ଏହି ନଗରରେ ଉପସ୍ଥିତ ହୋଇଅଛନ୍ତି । ସେ ନ ଜାଣି ଏହି ସ୍ଥାନର ଏକ ବେଶ୍ୟାଳୟର ଦ୍ୱାରଦେଶରେ ଶୟନ କରିଥିଲେ । ବେଶ୍ୟା ନିଜ ଗୃହର ଦ୍ୱାରଦେଶରେ କାଷ୍ଠନିର୍ମିତ ଏକ ବେତାଳ ମୂର୍ତ୍ତିର ମସ୍ତକରେ ଗୋଟିଏ ଉତ୍କୃଷ୍ଟ ମଣି ରଖିଥିଲା । ସେହି ମଣି ଦେଖି ଏହି ସାଧୁ ଲୋଭାନ୍ଧ ହେଲେ ଏବଂ ଅର୍ଦ୍ଧରାତ୍ରି ସମୟରେ ଉଠି ତାହା ହରଣ କରିବା ଉଦ୍ଦେଶ୍ୟରେ ତହିଁରେ ହସ୍ତ ପ୍ରଦାନ କଲେ । ମୂର୍ତ୍ତିଟି ଏପରି କୌଶଳରେ ବନ୍ଧା ହୋଇଥିଲା ଯେ, ତହିଁରେ ହସ୍ତ ଦେବାମାତ୍ରେ ତାହା ଦୁଇ ବାହୁ ପ୍ରସାରିତ କରି, ଏହାଙ୍କୁ ଭିଡ଼ି ଧରିଲା । ତାହାର ବାହୁ-ପେଷଣରେ ନିପୀଡ଼ିତ ହୋଇ ଏ ଆର୍ତ୍ତନାଦ କରିବାକୁ ଲାଗିଲେ । ସେତେବେଳେ ବେଶ୍ୟା ଉଠି କହିଲା, "ବତ୍ସ, ତୁମ୍ଭେ ମଳୟାଚଳରୁ ଅନେକ ରତ୍ନ ଆଣିଅଛ, ସେ ସମସ୍ତ ଏହି ମୂର୍ତ୍ତିଙ୍କୁ ପ୍ରଦାନ କର, ନଚେତ୍ ସେ ତୁମ୍ଭଙ୍କୁ ଛାଡ଼ିବ ନାହିଁ । ଏହି ବେତାଳ

---

ଏପରି ହିଁ କହିଥାଏ ।” ତା’ପରେ ଏହି ସାଧୁ ଆପଣାର ସମସ୍ତ ଧନରତ୍ନ ତାହାଙ୍କୁ ସମର୍ପଣ କଲେ । ହୃତସର୍ବସ୍ୱ ହୋଇ ବର୍ତ୍ତମାନ ସେ ମୋର ସଙ୍ଗୀ ହୋଇ ଅଛନ୍ତି ।”

ରାଜପୁରୁଷଗଣ ପରିବ୍ରାଜକଙ୍କଠାରୁ ଏହି ସମସ୍ତ ବ୍ୟାପାର ଶ୍ରବଣ କରି ବିଚାରପତି ଦ୍ୱାରା ସୁବିଚାର କରାଇଲେ । ବିଚାରଫଳରେ ନାପିତ ସ୍ତ୍ରୀର ମସ୍ତକ ମୁଣ୍ଡନ ହେଲା । ଗୋଉଡ଼ୁଣୀର ବିଲକ୍ଷଣ ଶାସନ ହେଲା । ବେଶ୍ୟା ଗୁରୁତର ଦଣ୍ଡପ୍ରାପ୍ତ ହେଲା ଏବଂ ସାଧୁ ଆପଣାର ସମସ୍ତ ଧନରତ୍ନ ପୁନଃ ପ୍ରାପ୍ତ ହେଲା ।

ଏହି କାରଣରୁ ମୁଁ କହୁଅଛି ଯେ, “ସ୍ୱର୍ଣ୍ଣରେଖା ସ୍ପର୍ଶକରି ରାଜପୁତ୍ରର ଯେପରି ଦୁର୍ଗତି ଘଟିଥିଲା” ଇତ୍ୟାଦି । ଏହା ମୋର ସ୍ୱକୃତ ଦୋଷ; ସୁତରାଂ ଏହି ବିଷୟରେ ଅନୁତାପ କରିବା ଅନୁଚିତ । ଅନନ୍ତର ଦମନକ କ୍ଷଣକାଳ ଚିନ୍ତାକରି କହିଲା— “ମିତ୍ର ! ମୁଁ ଯେପରି ନ ବୁଝି ପ୍ରଭୁଙ୍କ ସହିତ ସଞ୍ଜୀବକର ବନ୍ଧୁତା ଘଟାଇଅଛି, ସେପରି ନିଜ ବୁଦ୍ଧିକୌଶଳରେ ଏହି ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱବିଚ୍ଛେଦ ମଧ୍ୟ ଘଟାଇପାରେ, କାରଣ—

“ସମତଳ ପଟେ ପଟୁ ଚିତ୍ରକରଗଣ
ଉଚ୍ଚନୀଚ ଚିତ୍ର ଆଙ୍କି ଦେଖାନ୍ତି ଯେସନ;
ତେସନ କୌଶଳେ ଯେହୁ ହୁଏ ବିଚକ୍ଷଣ,
କରିଣ ସତ୍ୟକୁ ମିଥ୍ୟା ଦେଖାଏ ସେ ଜନ ।”

ସଞ୍ଜୀବକ ବାସ୍ତବିକ ନିର୍ଦ୍ଦୋଷ ହେଲେ ସୁଦ୍ଧା ମୁଁ ପ୍ରଭୁଙ୍କ ନିକଟରେ ତାହାକୁ ଘୋର ବିଦ୍ରୋହୀ ବୋଲି ପ୍ରତିପନ୍ନ କରି

---

ବଡ଼ ଶ୍ରେଷ୍ଠ ନ ହୁଅଇ ଶତ ଶତ ଜନେ;

ତାହାକୁ ପ୍ରଭୁଙ୍କ କୁଦୃଷ୍ଟିରେ ପକାଇବ । ଦେଖ, ଯେଉଁ ଲୋକ କାର୍ଯ୍ୟବେଳେ ନିଜର ବୁଦ୍ଧି ପ୍ରୟୋଗ କରେ, ସେ ସକଳ ସଙ୍କଟରୁ ଉଦ୍ଧାର ପାଏ ।

କରଟକ—ହଁ, ତୁମ୍ଭେ ଯାହା କହିଲ, ତାହା ସତ୍ୟ; କିନ୍ତୁ ଆମ୍ଭ ପ୍ରଭୁ ଓ ସଞ୍ଜୀବକ ମଧ୍ୟରେ ଅକୃତ୍ରିମ ପ୍ରଣୟ ଜାତ ହୋଇଅଛି, ତୁମ୍ଭେ କିପରି ଭେଦ ଘଟାଇ ପାରିବ ?

ଦମନକ—ଗୋଟିଏ ଉପାୟ କରିବାକୁ ହେବ । ପଣ୍ଡିତମାନେ କହିଅଛନ୍ତି, ବଳରେ ଯାହା କରାଯାଇ ନ ପାରେ, ତାହା କୌଶଳ ପ୍ରୟୋଗରେ ସାଧିତ ହୁଏ । ଥରେ ଗୋଟିଏ କାକୀ ସୁବର୍ଣ୍ଣ ହାରରେ ଏକ କାଳସର୍ପ ବଧ କରିଥିଲା ।

କରଟକ—କିପରି ?

ଦମନକ କହିଲା—

## କାକୀ ଓ କାଳସର୍ପ

କୌଣସି ଏକ ସମୟରେ ଗୋଟିଏ ବୃକ୍ଷରେ କାକ ଓ କାକୀ ବାସ କରୁଥିଲେ । ସେହି ବୃକ୍ଷର କୋଟରରେ ଏକ କାଳସର୍ପ ସେମାନଙ୍କର ଶାବକ ଭକ୍ଷଣ କରୁଥାଏ । ଥରେ କାକୀର ଗର୍ଭ ହେବାରୁ ସେ କାକକୁ କହିଲା, "ନାଥ, ଏହି ବୃକ୍ଷ ପରିତ୍ୟାଗ କରିବା ଉଚିତ, କାରଣ ଏଠାରେ ରହିବା ନିରାପଦ

ବନ୍ଧୁତା ସ୍ଥାପନ ଲୋକେ କରିବେ ଯତନେ ।

ନୁହେଁ । ଏହି ବୃକ୍ଷରେ ଯେତେଦିନଯାଏ କାଳସର୍ପ ଥିବ, ସେତେଦିନ ପର୍ଯ୍ୟନ୍ତ ଆମ୍ଭର ସନ୍ତାନଗଣଙ୍କ ରକ୍ଷା ନାହିଁ । କାରଣ, ଯେଉଁ ଲୋକର ମିତ୍ର ଶଠ, ଭାର୍ଯ୍ୟା ଦୁଷ୍ଟ, ଯାହାର ଭୃତ୍ୟ ସର୍ବଦା ସମାନ ଉତ୍ତର ଦିଏ ଏବଂ ଯାହା ଗୃହରେ ସର୍ପ ବାସ କରେ, ସେହି ଲୋକର ବିନାଶ ସୁନିଶ୍ଚିତ ।"

କାକ କହିଲା, "ପ୍ରିୟେ ! ଭୟ କରନାହିଁ । ମୁଁ ବାରମ୍ବାର ଏହି ଦାରୁଣ ଅତ୍ୟାଚାର ସହ୍ୟ କରିଅଛି । ଏବେ ଆଉ ତାହାକୁ କ୍ଷମା କରିବ ନାହିଁ ।" ତାହା ଶୁଣି ବାୟସୀ କହିଲା, "ତୁମ୍ଭେ କିପରି ଏ ଦୁରନ୍ତ ସର୍ପକୁ ଦମନ କରିବ ?" ବାୟସ କହିଲା, "ସେ ବିଷୟରେ କୌଣସି ଶଙ୍କା କର ନାହିଁ । କାରଣ, ଯାହାର ବୁଦ୍ଧି ଅଛି ତାହାର ଯଥେଷ୍ଟ ବଳ । ଯାହାର ବୁଦ୍ଧି ନାହିଁ ତାହାର ବଳ ଆସିବ କେଉଁଠାରୁ ?

"ଦୁର୍ବଳ ଶଶକ ଏକ ନିଜ ବୁଦ୍ଧିବଳେ,
ଦାରୁଣ ଦୁର୍ଜ୍ଜୟ ସିଂହ ମାରିଲା କୌଶଳେ ।"

କାକୀ ପଚାରିଲା, "କିପରି ?"

କାକ କହିଲା—

———

ସର୍ବ ଜୀବେ ଦିଏ ଯେହୁ ଯତନେ ଆଶ୍ରୟ;

## ଶଶକ ଓ ସିଂହ

ମନ୍ଦର ପର୍ବତରେ ଦୁର୍ଦ୍ଦାନ୍ତ ନାମକ ଏକ ସିଂହ ଥିଲା । ସେ ସର୍ବଦା ପଶୁବଧ କରୁଥାଏ । ଦିନେ ବନର ସମସ୍ତ ପଶୁ ମିଳିତ ହୋଇ ସେହି ସିଂହକୁ ନିବେଦନ କଲେ, "ମହାରାଜ, ଆପଣ କି ହେତୁ ସମସ୍ତ ପଶୁ ସଂହାର କରୁଅଛନ୍ତି ? ଆମ୍ଭେମାନେ ଆପଣଙ୍କ ଭୋଜନ ନିମିତ୍ତ ପ୍ରତ୍ୟହ ଗୋଟିଏ ଗୋଟିଏ ପଶୁ ଉପହାର ଦେବୁଁ ।" ସିଂହ କହିଲା, "ଯଦି ଏହା ତୁମ୍ଭମାନଙ୍କ ଅଭିପ୍ରେତ, ତେବେ ତାହାହିଁ ହେଉ ।" ତଦବଧି ସିଂହ ପ୍ରତିଦିନ ଗୋଟିଏ ଲେଖାଏଁ ପଶୁ ଉପହାର ପାଇ ଭୋଜନ କରିବାକୁ ଲାଗିଲା ।

ଏକଦା ଏକ ବୃଦ୍ଧ ଶଶକର ଯିବା ଦିନ ଉପସ୍ଥିତ ହେଲା । ସେ ଭାବିଲା, "ଲୋକେ ସଙ୍କଟରେ ପଡ଼ି ଜୀବନାଶାରେ ଭୀଷଣ ଶତ୍ରୁ ନିକଟରେ ବିନୟ ପ୍ରକାଶ କରିଥା'ନ୍ତି । ସିଂହ ହସ୍ତରେ ମୋ ମୃତ୍ୟୁ ଯେତେବେଳେ ନିଶ୍ଚିତ, ତେବେ ତାହାକୁ ଅନୁନୟ କରିବା ଲାଭ କଣ ? ଅତଏବ ତାହା ନିକଟକୁ କିଛି ବିଳମ୍ବରେ ଯିବି ।" ଶଶକ ଯେପରି ଭାବିଲା, ସେପରି କଲା । ସିଂହ କ୍ଷୁଧାରେ ଅତ୍ୟନ୍ତ କାତର ହୋଇଥିଲା । ଶଶକକୁ ଦେଖିବା ମାତ୍ରେ ସେ ମହା କ୍ରୋଧରେ କହିଲା, "ତୁ କି ହେତୁ ଏତେ ବିଳମ୍ବ କରି ଆସିଲୁ ?" ଶଶକ ଉତ୍ତର କଲା, "ମହାରାଜ ! ମୋର କୌଣସି ଅପରାଧ ନାହିଁ । ଆସୁଁ ଆସୁଁ ପଥରେ ଅନ୍ୟ ଏକ ସିଂହ ବଳପୂର୍ବକ ଧରି ରଖିଲା । ମୁଁ ତାହା ନିକଟକୁ ପୁନର୍ବାର ଯିବା ସକାଶେ ଶପଥ କରି ପ୍ରଭୁଙ୍କୁ ଏହି ବିଷୟ ଜଣାଇବାକୁ ଆସିଅଛି ।"

---

ହୃଅନ୍ତ ଈଶ୍ୱର ତାର ସର୍ବଦା ସହାୟ ।

ଶଶକର ଏହି କଥା ଶୁଣି ଦୁର୍ଦ୍ଦାନ୍ତ ଅତି କ୍ରୋଧରେ କହିଲା, "କେଉଁଠାରେ ସେ ଦୁରାତ୍ମା ? ଏତେ ଆସ୍ପର୍ଦ୍ଧା ତାର ! ମୋତେ ଅତିଶୀଘ୍ର ସେହି ସ୍ଥାନ ଦେଖାଅ।" ତା ପରେ ଶଶକ ସିଂହକୁ ସଙ୍ଗରେ ଧରି ଯାଇ ଏକ ଗଭୀର କୂପ ନିକଟରେ ଉପସ୍ଥିତ ହେଲା । ସେଠାରେ ସେ ସିଂହକୁ କହିଲା, "ପ୍ରଭୋ ! ହେଇଟି, ଆପଣ ଆସି ସ୍ୱଚକ୍ଷୁରେ ଦେଖନ୍ତୁ । ସିଂହ ସେହି କୂପ-ଜଳରେ ନିଜର ପ୍ରତିବିମ୍ବ ଦେଖି ସ୍ଥିର କଲା, ସେଠାରେ ଅନ୍ୟ ଏକ ସିଂହ ଅଛି । ସିଂହ ତାହା ଦେଖି ପ୍ରଚଣ୍ଡ କୋପରେ ସ୍ଫୀତ ହୋଇ ମହାଦର୍ପରେ ସେହି କୂପ ମଧ୍ୟକୁ ଡେଇଁବାକ୍ଷଣି ପଞ୍ଚତ୍ୱ ପ୍ରାପ୍ତ ହେଲା ।

ଏଥି ସକାଶେ ହିଁ ମୁଁ କହୁଥିଲି ଯେ,
'ବୁଦ୍ଧି ଯାର ବଳ ତାର ଜାଣିବ ନିଶ୍ଚୟ' ।"

ବାୟସୀ କହିଲା, "ଏହିକଥା ତ ଶୁଣିଲି, ବର୍ତ୍ତମାନ କର୍ତ୍ତବ୍ୟ କଣ କହ ।" କାକ କହିଲା, ପ୍ରିୟେ ! ପ୍ରତିଦିନ ରାଜପୁତ୍ର ଆସି ଏହି ନିକଟବର୍ତ୍ତୀ ସରୋବରରେ ସ୍ନାନ କରନ୍ତି । ସେ କଣ୍ଠରୁ ସ୍ୱର୍ଣ୍ଣହାର ବାହାର କରି ତାହା କୂଳର ପ୍ରସ୍ତର ଉପରେ ରଖି ସ୍ନାନ କରିବା ସକାଶେ ଯେତେବେଳେ ଜଳ ମଧ୍ୟରେ ପ୍ରବିଷ୍ଟ ହେବେ, ସେତେବେଳେ ତୁମ୍ଭେ ଯାଇ ସେହି ହାରଟି ଚଞ୍ଚୁରେ ଧରି ଆସିବ ଏବଂ ତାହା ଏହି ସର୍ପର କୋଟର ଭିତରେ ରଖିବ ।"

ଦିନକରେ ରାଜପୁତ୍ର ସରୋବରର ପ୍ରସ୍ତର ଉପରେ ଆପଣାର ସ୍ୱର୍ଣ୍ଣହାର ରଖି ସ୍ନାନ କରିବା ପାଇଁ ଜଳକୁ ଗିବାକ୍ଷଣି, କାକୀ ସେହି ହାର ନେଇ ସର୍ପର କୋଟର ମଧ୍ୟରେ ରଖିଲା, ରାଜଭୃତ୍ୟଗଣ

---

ପିତା, ମାତା ଆଉ ବନ୍ଧୁ ଏହି ତିନିଜଣ;

ସେହି ଧୂର୍ତ୍ତ ବଗଙ୍କ ଅନୁସରଣ କରି ସେହି ବୃକ୍ଷ-କୋଟରକୁ ଯାଇ ଅନୁସନ୍ଧାନ କରିବାବେଳେ ସେହି କାଳସର୍ପକୁ ଦେଖି ତାହାର ପ୍ରାଣ ସଂହାର କଲେ ।

ଏଥିଯୋଗୁଁ ମୁଁ କହୁଅଛି ଯେ, ବଳରେ ଯାହା ହୋଇ ନ ପାରେ, ତାହା କୌଶଳ-ପ୍ରୟୋଗରେ ସହଜସାଧ୍ୟ ହୋଇଥାଏ ।

କରଟକ—ଏପରି କରିବାର ଯଦି ସ୍ଥିର ହୁଏ, ତାହା ହେଲେ ତୁମ୍ଭେ ଶୀଘ୍ର ଯାଅ, ତୁମ୍ଭ ପଥ ବିଘ୍ନଶୂନ୍ୟ ହେଉ । ପଥି

ତହିଁ ଉତ୍ତାରେ ଦମନକ ପିଙ୍ଗଳକ ନିକଟକୁ ଯାଇ ପ୍ରଣାମ କରି କହିଲା, 'ମହାରାଜ ! ଆପଣଙ୍କ ଭାବୀ ଅମଙ୍ଗଳର ସୂଚନା ପାଇ ଜଣାଇବାକୁ ଆସିଅଛି । କାରଣ ପ୍ରଭୁ ବିପଦରେ ପଡ଼ିବା, କୁପଥରେ ଯିବା ଏବଂ କାର୍ଯ୍ୟକଳାପରେ ବ୍ୟତିକ୍ରମ କରିବାର ଦେଖିଲେ, ହିତୈଷୀ ଭୃତ୍ୟ, ପ୍ରଭୁ ନ ପଚାରିଲେ ହେଁ, ତାହାକୁ ସେହି ସେହି ବିଷୟ ଜଣାଇ ଉପଦେଶ ଦିଏ । ରାଜା ସର୍ବଦା ରାଜଭୋଗରେ ସମୟ କଟାଏ ଏବଂ ଯାହାକିଛି ରାଜକାର୍ଯ୍ୟ ମନ୍ତ୍ରୀ-ଦ୍ୱାରା ସାଧିତ ହୁଏ । ଅତଏବ ରାଜକାର୍ଯ୍ୟରେ କୌଣସି ଅନିଷ୍ଟ ଉପସ୍ଥିତ ହେଲେ, ସେଥି ସକାଶେ ମନ୍ତ୍ରୀ ହିଁ ଦାୟୀ । ଯଦି କୌଣସି ବ୍ୟକ୍ତି ପ୍ରଭୁପଦ ପ୍ରତି ଲୋଭ ପ୍ରକାଶ କରେ, ତାହାହେଲେ ଜୀବନ ଯାଉ ପଛକେ, ମସ୍ତକଚ୍ଛେଦନ ହେଉ ପଛକେ, ତାହାକୁ ସମୁଚିତ ଶାସ୍ତି ଦେବା ମନ୍ତ୍ରୀର କର୍ତ୍ତବ୍ୟ ।'

ପିଙ୍ଗଳକ ସାଦରେ ଜିଜ୍ଞାସା କଲା, 'ତୁମ୍ଭେ କଣ କହିବାକୁ ଇଚ୍ଛାକର ?'

ସ୍ୱଭାବତଃ ସଦା ହିତ କରନ୍ତି ସାଧନ ।

ଦମନକ—ସ୍ୱାମୀଙ୍କ ପ୍ରତି ସଞ୍ଜୀବକର ବିପରୀତ ବ୍ୟବହାର ଦେଖି ମୁଁ ନିତାନ୍ତ ଦୁଃଖିତ । ସେ ଆମ୍ଭମାନଙ୍କ ନିକଟରେ ମହାରାଜଙ୍କ ରାଜଶକ୍ତି-ବିଷୟର ନିନ୍ଦା କରିଥାଏ ଏବଂ ସ୍ୱୟଂ ରାଜ୍ୟେଶ୍ୱର ହେବାର ଅଭିଳାଷ ପ୍ରକାଶ କରେ ।

ଏହା ଶୁଣି ପିଙ୍ଗଳକ ଅତିଶୟ ଭୟ ଓ ବିସ୍ମୟରେ ନୀରବ ରହିଲା । ଦମନକ ପୁନର୍ବାର କହିଲା, 'ମହାରାଜ, ସକଳ ମନ୍ତ୍ରୀଙ୍କୁ ପରିତ୍ୟାଗ କରି ସ୍ୱାମୀ ତାହାଙ୍କୁ ସକଳ କାର୍ଯ୍ୟାଧିକାରରେ ନିଯୁକ୍ତ କରିଅଛନ୍ତି । ଏପରି କରିବା ବଡ଼ ଦୋଷର କଥା । କାରଣ ଯେଉଁ ରାଜାର ମନ୍ତ୍ରୀ ଅତ୍ୟନ୍ତ କ୍ଷମତା-ପ୍ରାପ୍ତ ହୁଏ, ରାଜଲକ୍ଷ୍ମୀ ସେହି ରାଜା ଓ ସେହି ମନ୍ତ୍ରୀର ପ୍ରଥମତଃ ତୁଲ୍ୟରୂପେ ଆଶ୍ରୟ ନିଅନ୍ତି । ଲକ୍ଷ୍ମୀଦେବୀ ଅବଳା ଜାତି, ଅବଳା ଜାତି ସ୍ୱଭାବତଃ ଦୁର୍ବଳା । ଅତଏବ ଦୁଇଜଣଙ୍କ ଭାର ସହ୍ୟ କରି ନ ପାରି ଶେଷରେ ଯାହାର କ୍ଷମତା ଅଧିକ ହୁଏ, ଲକ୍ଷ୍ମୀ ତାହାର ହିଁ ସମ୍ପୂର୍ଣ୍ଣରୂପେ ହସ୍ତଗତ ହୋଇଥାନ୍ତି । ଅର୍ଥାତ୍ ମନ୍ତ୍ରୀ ଅତିରିକ୍ତ କ୍ଷମତା ପାଇଲେ, ଶେଷରେ ସ୍ୱୟଂ ରାଜ୍ୟେଶ୍ୱର ହୋଇ ବସେ ।'

'ଆହୁରି ଦେଖନ୍ତୁ, ରାଜା ଯଦି ଜଣେ ଅମାତ୍ୟ ହସ୍ତରେ ରାଜ୍ୟର ସମସ୍ତ ଭାର ସମର୍ପଣ କରେ, ତାହାହେଲେ ସେ ଅମାତ୍ୟ ଅତିଶୟ ଅଭିମାନ-ମତ୍ତ ହୋଇ ସ୍ୱୟଂ ସ୍ୱାଧୀନ ହେବା ସକାଶେ ଅଭିଳାଷ ପ୍ରକାଶ କରେ ଏବଂ ସ୍ୱାଧୀନତା ପ୍ରାପ୍ତିରେ ଶେଷରେ ରାଜଦ୍ରୋହୀ ହୋଇ ରାଜାର ଧନ ପ୍ରାଣ ସମସ୍ତ ହରଣ କରେ । କଥିତ ଅଛି, ବିଚଳିତ ଦନ୍ତ, ବିଷାକ୍ତ ଆହାର ଏବଂ ଦୁଷ୍ଟ

---

ଏକମାତ୍ର ଧର୍ମ ଅଟେ ପ୍ରିୟ ବନ୍ଧୁଜନ,

ହୁରାଗ୍ରୂର ମନ୍ତ୍ରୀ—ଏମାନଙ୍କୁ ଯେତେ ଶୀଘ୍ର ନିର୍ମୂଳ କରାଯାଏ, ତେତେ ମଙ୍ଗଳ । ପୁଣି, ଯେଉଁ ରାଜା ମନ୍ତ୍ରୀ ହସ୍ତରେ ଲକ୍ଷ୍ମୀ ସମର୍ପଣ କରେ, ମନ୍ତ୍ରୀର କୌଣସି ବ୍ୟସନ ଘଟିଲେ, ସେହି ରାଜା ପଥ-ପ୍ରଦର୍ଶକ ବ୍ୟତୀତ ଅନ୍ଧବତ୍ ମ୍ରିୟମାଣ ହୁଏ । ସଞ୍ଜୀବକ ସକଳ କାର୍ଯ୍ୟରେ ଯଥେଚ୍ଛାଗ୍ରୂର କରୁଅଛି । ଅତଏବ ଏହି ବିଷୟରେ ମହାରାଜ ହିଁ କର୍ତ୍ତା । ରାଜଲକ୍ଷ୍ମୀ-ଭୋଗ ପ୍ରତି ଲୋଭ ପ୍ରକାଶ କରେ ନାହିଁ, ଏପରି ସାଧୁ ଜଗତରେ ବିରଳ ।'

ପିଙ୍ଗଳକ—(ଚିନ୍ତା କରି) ଭଦ୍ର ! ଏପରି ହେଲେ ହେଁ ମୁଁ ସଞ୍ଜୀବକକୁ ଅନ୍ତର ସହିତ ପ୍ରେମ କରେ । ଯଦ୍ୟପି ପ୍ରିୟଜନ ଅତ୍ୟନ୍ତ ମନ୍ଦାଚରଣ କରେ କିମ୍ବା ଅଶେଷ ଅନିଷ୍ଟ ସାଧନ କରେ, ତଥାପି ସେ କଦାପି ଅପ୍ରିୟ ନୁହେ, ବରଞ୍ଚ ପ୍ରିୟ ରହେ । ନିଜ ଶରୀରରେ ବହୁ ଦୋଷ ଥିଲେ ସୁଦ୍ଧା ତହିଁ ପ୍ରତି କିଏ ବା ଯତ୍ନ ନ କରେ ? ଅଗ୍ନି ଗୃହାଦି ଛାରଖାର କଲେ ହେଁ, ତାହା ପ୍ରତି କିଏ କେବେ ଅନାଦର ପ୍ରକାଶ କରିବାର ଦେଖିଅଛ ?

ଦମନକ—ମହାରାଜ ! ତାହା ଅତି ଦୋଷାବହ । କାରଣ, ରାଜା ଯଦି ପୁତ୍ର, ମନ୍ତ୍ରୀ ଓ ଉଦାସୀନ ବ୍ୟକ୍ତି ପ୍ରତି ଅତିରିକ୍ତ କୃପାଦୃଷ୍ଟି ନିକ୍ଷେପ କରେ, ତାହାହେଲେ ସେମାନେ ତାହାର ଆଶ୍ରୟ ପାଇ ଅବଶେଷରେ ନିଜେ ନିଜେ ରାଜେଶ୍ୱର ହୁଅନ୍ତି । ମହାରାଜ ଶୁଣନ୍ତୁ—

"ଅପ୍ରିୟ ହେଲେ ହେଁ ପଥ୍ୟ ଯେ କରେ ଗ୍ରହଣ ।
ପରିଣାମେ ସୁଖ ତାର ନ ହୁଏ ଖଣ୍ଡନ ।"

---

ଯାଏ ସେ ଧାର୍ମିକ ସଙ୍ଗେ ହେଲେ ହେଁ ମରଣ ।

ଯେଉଁଠାରେ ହିତବକ୍ତା ଓ ଶ୍ରୋତା ଦେଖାଯାନ୍ତି, ସେଠାରେ ଲକ୍ଷ୍ମୀ ସର୍ବଦା ବିରାଜିତ । ଆପଣ ପୁରାତନ ବିଶ୍ୱସ୍ତ ଭୃତ୍ୟମାନଙ୍କୁ ପରିତ୍ୟାଗ ପୂର୍ବକ ଏହି ଆଗନ୍ତୁକ ବ୍ୟକ୍ତିକୁ ଏତେଦୂର ବିଶ୍ୱାସ କରି ଅନ୍ୟାୟ କରିଅଛନ୍ତି । କାରଣ ପୁରାତନ ସେବକ ଅପରାଧୀ ହେଲେ, ରାଜା ଯଦି ତାହାକୁ ତ୍ୟାଗ କରି ନିତାନ୍ତ ଅପରିଚିତ ଏକ ବ୍ୟକ୍ତିକୁ ବିଶ୍ୱାସ କରେ, ତାହାହେଲେ ତାହାଠାରୁ ବଳି ଆଉ ଅଧିକ ଅବିବେକ କଣ ହୋଇପାରେ ଏବଂ ସେହି ରାଜ୍ୟ କି ଭ୍ରଷ୍ଟ ହେବ ନାହିଁ, ଆଉ ହେବ ବା କଣ ?

ପିଙ୍ଗଳକ—ଏହା ଅତି ଆଶ୍ଚର୍ଯ୍ୟର ବିଷୟ ! ମୁଁ ଯେତେବେଳେ ଅଭୟ ଦେଇ ତାହାକୁ ଆଣିଅଛି ଏବଂ ପରମ ଯତ୍ନ ସହକାରେ ପ୍ରତିପାଳନ କରୁଅଛି, ତେବେ ସେ କିପରି ମୋର ବିଦ୍ରୋହୀ ହୋଇ ଉଠିବ ?

ଦମନକ—ମହାରାଜ ଅଶେଷ ଯତ୍ନରେ ପାଳିତ ହେଲେ ହେଁ ଦୁର୍ଜ୍ଜନ କଦାପି ତାହାର ସ୍ୱଭାବ ଛାଡ଼େ ନାହିଁ । ତେଣେ ତେଲ ଓ ଜଳରେ ମର୍ଦ୍ଦିତ ହେଲେ ସୁଦ୍ଧା କୁକୁରର ପୁଚ୍ଛ କେବେ କଣ ସରଳ ହୋଇପାରେ ? ତାହାର ଲାଙ୍ଗୁଳକୁ ବାର ବର୍ଷକାଳ ବାଉଁଶରେ ବାନ୍ଧି ରଖିଲେ ସୁଦ୍ଧା ତାହା କେବେ ସଳଖ ହୁଏ ନାହିଁ, ସେହି ବଙ୍କା ହିଁ ରହେ । ଯେତେ ମାଡ଼ିବ ମାଠ, ମୁଁ ସେହି ବରପୋଡ଼ା କାଠ' । ଅତିଶୟ ପାଳନ ଓ ସମ୍ମାନରେ ଖଳ ଯେ ତୁଷ୍ଟ ହୁଏ, ଏହା କଦାପି ସ୍ୱୀକାର କରାଯାଇ ନ ପାରେ । ଅମୃତ ଢାଳ

---

ନିଜର ମରଣଦୁଃଖ କରି ଅନୁମାନ,

ବିଷବୃକ୍ଷକୁ ବଢ଼ାଇଲେ ତହିଁରେ କଣ ସୁଫଳ ଫଳେ ? ଏହି କାରଣରୁ ମୁଁ କହୁଅଛି ।

"ଯେ ଜନ ମଙ୍ଗଳ ଯାର କରିବ କାମନା,
ସେ ଲୋକ ଯାଚିଣ ତାକୁ ଦେବ ସୁମନ୍ତ୍ରଣା ।"

ଏହା ସାଧୁର ଧର୍ମ ! ଅନ୍ୟଥା କଲେ ଧର୍ମ ନଷ୍ଟ ହେବ । ପଣ୍ଡିତମାନେ କହୁଅଛନ୍ତି, ଯେ ଅମଙ୍ଗଳ ହରଣ କରେ ସେ ପ୍ରକୃତ ହିତକାଂକ୍ଷୀ । ଯେଉଁ କର୍ମ ଅତ୍ୟନ୍ତ ପବିତ୍ର ଓ ନିର୍ମଳ ତାହାହିଁ ଯଥାର୍ଥ କର୍ମ; ଯେଉଁ ସ୍ତ୍ରୀ ପତିକୁ ସନ୍ତୁଷ୍ଟ କରିପାରେ, ସେ ପ୍ରକୃତ ପତ୍ନୀ; ବୁଦ୍ଧିମାନ୍ ସେ ଯାହାକୁ ସାଧୁଗଣ ମାନନ୍ତି; ପ୍ରକୃତ ସୁଖୀ ସେ ଯାହା ମନରେ ତୃଷ୍ଣା ସ୍ଥାନ ପାଏ ନାହିଁ; ପ୍ରକୃତ ପୁରୁଷ ସେ ଯେ ଷଡ଼୍‌ରିପୁକୁ ଆୟତ୍ତ କରି ପାରିଅଛି, ଯାହା ଅହଙ୍କାର ନ ଜନ୍ମାଏ ତାହା ଲକ୍ଷ୍ମୀ ଏବଂ ଯାହାର ପ୍ରଣୟ ଅକୃତ୍ରିମ ସେହି ଲୋକହିଁ ପ୍ରକୃତ ମିତ୍ରପଦବାଚ୍ୟ । ସଞ୍ଜୀବକଠାରୁ ଏହି ବିପଦର ଆଶଙ୍କା ଆପଣଙ୍କୁ ଜଣାଇଲେ ହୁଏତ ଆପଣ ତାହା ଯଦି ନ ଶୁଣନ୍ତି ତାହାହେଲେ ତହିଁରେ ଏହି ଭୃତ୍ୟର କୌଣସି ଅପରାଧ ନାହିଁ । କାରଣ ରାଜାମାନେ ଅଭିମାନରେ ଅନ୍ଧ ହୋଇ ମନ୍ତ୍ରୀମାନଙ୍କ ତୁଲ୍ୟ ବାଟଣ ମାନନ୍ତି ନାହିଁ, କାର୍ଯ୍ୟାକାର୍ଯ୍ୟ ହିତାହିତ ବିବେଚନା ନ କରି ଅବାଧରେ ସ୍ୱେଚ୍ଛାଚାର କରନ୍ତି ଏବଂ ସ୍ୱକୃତ ଅପରାଧ ଯୋଗୁଁ ଶେଷରେ ବିପଦରେ ପଡ଼ି ଆପଣାର ଦୋଷ ସ୍ୱୀକାର ନ କରି ଭୃତ୍ୟମାନଙ୍କୁ ଦୋଷୀ ବୋଲି କହିଥାନ୍ତି ।

ପିଙ୍ଗଳକ ଭାବିଲା, "ପର ମୁଖରେ ଅପବାଦ ଶ୍ରବଣ କରି କାହାକୁ ଦଣ୍ଡ ଦେବା ଉଚିତ ନୁହେଁ, ନିଜେ ତାହାର ଦୋଷ-ଗୁଣ

ସନ୍ଧାନ କରି ପ୍ରଜା ବା ଶାସ୍ତିବିଧାନ ଏକାନ୍ତ ବାଞ୍ଛନୀୟ । କଥିତ ଅଛି, ସର୍ପମୁଖରେ ହସ୍ତ ଦେଲେ ଯେପରି କ୍ଷତ ଘଟେ ସେପରି ନ୍ୟାୟ ପ୍ରକାରେ ଦୋଷ-ଗୁଣ ବିଚାର ନ କରି ନିଗ୍ରହ କିମ୍ବା ପୁରସ୍କାର କରିବାଦ୍ୱାରା ବିନାଶ ଘଟେ ।" ତା'ପରେ ପ୍ରକାଶ୍ୟଭାବରେ କହିଲା, "ଭଦ୍ର ! ତେବେ କଣ ସଞ୍ଜୀବକକୁ ଏହି ସ୍ଥାନରୁ ଅପସାରିତ କରିବ ?"

ଦମନକ ବ୍ୟସ୍ତ ହୋଇ କହିଲା, "ନାହିଁ ମହାରାଜ ! ତାହା କରନ୍ତୁ ନାହିଁ । ତାହା କଲେ ମନ୍ତ୍ରଣା ପ୍ରକାଶିତ ହେବ । ପଣ୍ଡିତମାନେ କହିଅଛନ୍ତି; ଖଣ୍ଡ ବା ଭଗ୍ନ ବୀଜରୁ ଅଙ୍କୁର ଜାତ ହୁଏ ନାହିଁ । ସେପରି ଗୁପ୍ତ ମନ୍ତ୍ରଣା ଭାଙ୍ଗିଲେ ବା ପ୍ରକାଶ ପାଇଲେ ତାହା ବିଫଳ ହୁଏ । ଅତଏବ ବୀଜ ତୁଲ୍ୟ ମନ୍ତ୍ରଣା ସୁଦ୍ଧା ଅତି ସାବଧାନତା ସହିତ ରକ୍ଷା କରିବା ଶ୍ରେୟସ୍କର ଏବଂ ଆଦାନପ୍ରଦାନ ପ୍ରଭୃତି କର୍ତ୍ତବ୍ୟ କର୍ମ ଯେତେ ଶୀଘ୍ର ସମ୍ପନ୍ନ କରାଯାଏ ତେତେ ମଙ୍ଗଳ । ଯଦି ତହିଁରେ କାଳବିଳମ୍ବ ହୁଏ ତାହାହେଲେ ତାଙ୍କର ଲକ୍ଷ୍ୟାଂଶତକ ସମୟରେ ଶୋଷିପ୍ରାପ୍ତ ହୁଏ ଏବଂ କ୍ରମଶଃ କ୍ଷତି ଘଟିଥାଏ । ସୁତରାଂ ଉପସ୍ଥିତ ବିଷୟ ଅତିଶୀଘ୍ର ଓ ସାବଧାନତା ସହିତ ସମ୍ପାଦନ କରିବାକୁ ହେବ । କାରଣ, ଶୂର ସୈନିକର ସମସ୍ତ ଅବୟବ ଅସ୍ତ୍ରଶସ୍ତ୍ରଦ୍ୱାରା ସୁସଜ୍ଜିତ ଓ ସୁରକ୍ଷିତ ହୋଇଥିଲେ ସୁଦ୍ଧା ସେ ପ୍ରତିମୂହୂର୍ତ୍ତ ଭେଦ-ଶଙ୍କା କରେ । ଅତଏବ ରଣକ୍ଷେତ୍ରରେ ଅଧିକ କ୍ଷଣ ବିଳମ୍ବ ହେଲେ ସେହି ଭୟଶୀଳ ଯୋଦ୍ଧା ସ୍ଥିର ହୋଇ ରହି ନ ପାରେ । ସେପରି ମନ୍ତ୍ରଣା ମଧ୍ୟ ତାର 'ସମସ୍ତ ଅଙ୍ଗ' ସମ୍ପୂର୍ଣ୍ଣ ସୁରକ୍ଷିତ ହେଲେ ହେଁ ଅନ୍ୟଦ୍ୱାରା ପ୍ରକାଶ ପାଇବାର ଭୟ ରହେ ।

---

ମହାପୁଣ୍ୟ ମହାପାପ ଯେ ବା ଯାହା କରେ;

"ସଞ୍ଜୀବକର ଦୋଷ ସ୍ପଷ୍ଟ ଦେଖି ତାହାକୁ ସେହି ଦୋଷ-କର୍ମରୁ ନିବାରଣପୂର୍ବକ ପୂର୍ବବତ୍ ତାହା ପ୍ରତି ସମ୍ପ୍ରୀତି ରଖିବା ମଧ୍ୟ ଏକାନ୍ତ ଅନୁଚିତ । କାରଣ କୌଣସି କାରଣରୁ ବନ୍ଧୁତା ଥରେ ନଷ୍ଟ ହେଲେ ଯେ ତାହାର ପୁନର୍ବାର ବୃଦ୍ଧି ଚେଷ୍ଟା କରେ, ସେ ନିଜ ମୃତ୍ୟୁକୁ ବରଣ କରି ଆଣେ ମାତ୍ର—ଯେପରି ଅଶ୍ୱତରୀ ଗର୍ଭଧାରଣ କରିବାକ୍ଷଣି ମୃତ୍ୟୁପ୍ରାପ୍ତ ହୋଇଥାଏ ।

ପିଙ୍ଗଳକ—ମୋର ଅନିଷ୍ଟ-ସାଧନରେ ସେ କେତେଦୂର ସମର୍ଥ ତାହା ପ୍ରଥମରେ ଜାଣିବା ଉଚିତ ।

ଦମନକ— ମହାରାଜ ! ତାହାର ଉପାୟ ଓ ସହାୟ ନ ଜାଣିଲେ ତାହାର ଶକ୍ତି ବୁଝାଯାଇ ନ ପାରେ । ଦେଖନ୍ତୁ, ସହାୟ ବଳରେ ଥରେ ଗୋଟିଏ ଟିଟ୍ଟିଭ, ଅତି କ୍ଷୁଦ୍ର ହେଲେହେଁ, ବିଶାଳ ସାଗର ହସ୍ତରୁ ନିଜ ଅଣ୍ଡସମୂହ ରକ୍ଷା କରି ପାରିଥିଲା ।

ପିଙ୍ଗଳକ—କିପରି ?

ଦମନକ କହିଲା—

# ଟିଟ୍ଟିଭ ଓ ଟିଟ୍ଟିଭୀ

ସମୁଦ୍ରତୀରରେ ଏକ ଟିଟ୍ଟିଭ ଓ ଏକ ଟିଟ୍ଟିଭୀ ବାସ କରୁଥାନ୍ତି । ଟିଟ୍ଟିଭୀର ପ୍ରସବ କାଳ ଉପସ୍ଥିତ ହେବାରୁ ସେ ନିଜ ସ୍ୱାମୀକୁ କହିଲା, "ନାଥ, ମୋ ପ୍ରସବର ଉପଯୁକ୍ତ ସ୍ଥାନ ଅନୁସନ୍ଧାନ କର ।" ଟିଟ୍ଟିଭ କହିଲା, "କାହିଁକି ? ଏହି ସ୍ଥାନ ତ ପ୍ରସବର ଉପଯୁକ୍ତ ।" ଟିଟ୍ଟିଭୀ କହିଲା, "ସମୁଦ୍ର ତରଙ୍ଗରେ ଏହି ସ୍ଥଳ ପ୍ଲାବିତ

---

ଏ ଜୀବ ଲୋକେ ହିଁ ତାର ଫଳ ଭୋଗକରେ ।

ହୋଇଥାଏ ।" ଟିଟ୍ଟିଭ—"ପ୍ରିୟେ, ମୁଁ କଣ ଏତେ ଅକ୍ଷମ ଯେ, ମୋ ଗୃହର ଅଣ୍ଡାସକଳ ସମୁଦ୍ରଦ୍ୱାରା ଅପହୃତ ହେବ ।" ଟିଟ୍ଟିଭୀ ହାସ୍ୟ କରି କହିଲା, "ନାଥ, ସମୁଦ୍ର ଓ ତୁମ୍ଭ ମଧ୍ୟରେ ବହୁତ ପ୍ରଭେଦ । ଅଥବା ଯେଉଁ ବ୍ୟକ୍ତି ଆପଣାର ବଳାବଳ ବୁଝି ବିପଦରୁ ଉଦ୍ଧାର ପାଇବାକୁ ଚେଷ୍ଟାକରେ, ସେପରି ସୁବୁଦ୍ଧି ଲୋକ ବ୍ୟସନରେ କଦାଚ ଅବସନ୍ନ ହୁଏ ନାହିଁ ଏବଂ ଯେଉଁ ଲୋକ ଅସମ୍ଭବ ଓ ଦୁଃସାଧ୍ୟ କାର୍ଯ୍ୟରେ ସହସା ହସ୍ତକ୍ଷେପ କରେ, ଯେ ଅକାରଣରେ ସ୍ୱଜନଗଣଙ୍କ ବିରୋଧୀ ହୁଏ, ଯେ ପ୍ରବଳ ସହିତ ସ୍ପର୍ଦ୍ଧା କରେ ଏବଂ ଦୁଷ୍ଟା ସ୍ତ୍ରୀ ପ୍ରତି ଯାହାର ଅଟଳ ବିଶ୍ୱାସ, ତାହାର ଯମ-ଭେଟ ସୁନିଶ୍ଚିତ ।

ଅନନ୍ତର ସ୍ୱାମୀର କଥାରେ ଟିଟ୍ଟିଭୀ ସେହି ସ୍ଥାନରେ ହିଁ ପ୍ରସବ କଲା । ସମୁଦ୍ର ଏହି ବୃତ୍ତାନ୍ତ ଜାଣିପାରି ତାହାର ଶକ୍ତି ପରୀକ୍ଷା କରିବା ସକାଶେ ଟିଟ୍ଟିଭୀର ଅଣ୍ଡାସକଳ ଅପହରଣ କଲା । ତାହା ଦେଖି ଟିଟ୍ଟିଭୀ ଗଭୀର ଶୋକରେ ଅଭିଭୂତା ହୋଇ ସ୍ୱାମୀକୁ କହିଲା, "ନାଥ, ଦେଖ କି ଦୁର୍ଘଟଣା ଆସି ଉପସ୍ଥିତ ହେଲା ! ମୋର ସମସ୍ତ ଅଣ୍ଡା ବିନଷ୍ଟ ହୋଇଅଛି ।" ଟିଟ୍ଟିଭ କହିଲା, "ପ୍ରିୟେ, କୌଣସି ଭୟ ନାହିଁ ।" ଏହା କହି ସେ ପକ୍ଷୀଗଣଙ୍କୁ ସମବେତ କରି ପକ୍ଷୀରାଜ ଗରୁଡ଼ ନିକଟକୁ ଗମନ କଲା ଏବଂ ତାହାଙ୍କୁ ନିଜ ଅଣ୍ଡାଗୁଡ଼ିକର ଅପହରଣ ସମ୍ବାଦ ଜଣାଇଲା । ଗରୁଡ଼ ସେହି ବିବରଣ ଶ୍ରବଣ କରି ସୃଷ୍ଟି ସ୍ଥିତି-ପ୍ରଳୟକାରୀ ପ୍ରଭୁ ନାରାୟଣଙ୍କୁ ଏହି ବିଷୟ ବିଜ୍ଞାପନ କରିବାରୁ ସେ ସେହି ଅଣ୍ଡାବଳୀ ଟିଟ୍ଟିଭ ଦମ୍ପତିଙ୍କୁ ପ୍ରତ୍ୟର୍ପଣ ସକାଶେ ସମୁଦ୍ରକୁ ଆଦେଶ ଦେଲେ । ତହିଁଉତ୍ତାରେ ସମୁଦ୍ର

ନାରିପୁଣଙ୍କ ଆଦେଶ ଶିରୋଧାର୍ଯ୍ୟ କରି ସେହି ସମସ୍ତ ଅସ୍ତ୍ର ଟିଟ୍ଟିଭକୁ ପ୍ରତ୍ୟର୍ପଣ କଲା ।

ଏଥି ସକାଶେ ମୁଁ କହିଥିଲି ଯେ,

"କରୂପ ଉପାୟ ତାର କରୂପ ସହାୟ
ନ ବୁଝି ନାହିଁ ତା ଶକ୍ତି ଜାଣିବା ଉପାୟ ।" ଇତ୍ୟାଦି

ପିଙ୍ଗଳକ—ସେ ଯେ ମୋର ଅନିଷ୍ଟ କରିବାକୁ ଉଦ୍ୟତ, ତାହା ମୁଁ କପରି ଜାଣି ପାରିବି ?

ଦମନକ—ସଞ୍ଜୀବକ ଯେତେବେଳେ ବ୍ୟସ୍ତ ହୋଇ ଶୃଙ୍ଗାଗ୍ର ଉଦ୍ୟତ କରି ପ୍ରହାର କରିବା ସକାଶେ ସମ୍ମୁଖକୁ ଆସିବ, ସେତେବେଳେ ପ୍ରଭୁ ଜାଣିପାରିବେ ।

ଦମନକ ସିଂହକୁ ଏହା କହି ସଞ୍ଜୀବକ ନିକଟକୁ ଗଲା ଏବଂ ଧୀରେ ଧୀରେ ତାହାର ସମ୍ମୁଖକୁ ଯାଇ ନିତାନ୍ତ ବିସ୍ମିତଭାବରେ ରହିଲା । ସଞ୍ଜୀବକ ତାହାକୁ ଦେଖି ସାଦରେ ଜିଜ୍ଞାସା କଲା, 'ଭାଇ ଦମନକ ତୁମ୍ଭର ମଙ୍ଗଳ ତ ?'

ଦମନକ—ଯେ ପରର ଆଶ୍ରିତ, ତାହାର ମଙ୍ଗଳ କେଉଁଠାରେ ? କାରଣ ଯେ ରାଜାଶ୍ରିତ ସେ ସର୍ବଦା ଅସୁଖୀ, ତାହାର ସମସ୍ତ ବିଭବ ପରାଧୀନ ଏବଂ ତାହାର ଜୀବନରେ ପ୍ରତିମୁହୂର୍ତ୍ତ ସଂଶୟ ହୁଏ । ସମ୍ପଦ-ପ୍ରାପ୍ତିରେ ଗର୍ବିତ ନ ହୁଏ, ଏପରି ଲୋକ ନାହିଁ । ବିଷୟୀ ବ୍ୟକ୍ତି କେବେ ନିରାପଦ ନୁହେ । ରମଣୀର କୁହୁକରେ କିଏ ପ୍ରତାରିତ ହୁଏ ନାହିଁ ? ରାଜାର ଆଶ୍ରୟ

ହେଲେ ହେଁ ଜର୍ପ୍ୟକ୍ ଜାତି ବିଶ୍ୱାସୀ ସେ ହୁଏ ।

କିଏ ବା ଚିରନ୍ତନ ଲାଭ କରେ ? ଦୁରନ୍ତ କାଳର ହସ୍ତ ଏଡାଇ ପାରିବ, ଏପରି ଶକ୍ତି କାହାର ଅଛି ? ପର ନିକଟରେ ଯାଚ୍ଞା କରି କିଏ କେବେ ସମ୍ମାନ ପ୍ରାପ୍ତ ହେବାର ଦେଖିଅଛ ଏବଂ ଦୁଷ୍ଟ ଲୋକର କୁହୁକ-ଜାଲରେ ପଡ଼ି କିଏ କେବେ ଚକ୍ରିରୁ ମୁକ୍ତ ହେବାର ଶୁଣିଅଛ ?

ସଞ୍ଜୀବକ—ସଖେ ! କହ କଣ ଘଟିଅଛି ।

ଦମନକ – ଆଉ କହିବି କଣ ? ମୋର ଅତି ଦୁର୍ଭାଗ୍ୟ । ଦେଖ ଅକୂଳ ସାଗର ମଧ୍ୟରେ ନିମଗ୍ନ ହୋଇଥିବା ବ୍ୟକ୍ତି ସମ୍ମୁଖରେ ଭୁଜଙ୍ଗ ଆଶ୍ରୟ ପାଇ ଧରିବାକୁ କିମ୍ବା ଛାଡ଼ିବାକୁ ଯେପରି ଅସମର୍ଥ ହୁଏ, ମୁଁ ସେପରି ଉଭୟ ସଙ୍କଟରେ ପଡ଼ି କିଂକର୍ତ୍ତବ୍ୟବିମୂଢ଼ ହୋଇଅଛି । କାରଣ କହିଲେ ରାଜାଙ୍କ ବିଶ୍ୱାସ ହରାଇବି ନ କହିଲେ ବାନ୍ଧବଙ୍କ ପ୍ରାଣନାଶ ଘଟିବ । କଣ କରାଯିବ ? ମୁଁ ଅତ୍ୟନ୍ତ ବିଷମ ସମସ୍ୟାରେ ପଡ଼ିଅଛି । କଣ କରିବି, କେଉଁଠାକୁ ଯିବି, ମୁଁ ଖୋଜି କୌଣସି ଉପାୟ ପାଇ ପାରୁ ନାହିଁ ।

ଏହା କହି ଦମନକ ଦୀର୍ଘ ନିଃଶ୍ୱାସ ତ୍ୟାଗ କରିବାକୁ ଲଗିଲା । ସଞ୍ଜୀବକ—ମିତ୍ର ! ଗୋପନୀୟ ହେଲେ ସୁଦ୍ଧା ମୋତେ ତୁମ୍ଭ ମନର କଥା ସମସ୍ତ ଖୋଲି କହିବାକୁ ଏକାନ୍ତ ଅନୁରୋଧ କରେ ।

ଦମନକ ସଂଗୋପନରେ କହିଲା, "ରାଜା ଯାହା ବିଶ୍ୱାସ କରି କହି ଅଛନ୍ତି, ତାହା କାହାକୁ କହିବା ଉଚିତ ନୁହେଁ ସତ୍ୟ; କିନ୍ତୁ ତୁମ୍ଭେ ଯେତେବେଳେ ଆମ୍ଭମାନଙ୍କ କଥାରେ ବିଶ୍ୱାସ କରି ଏଠାକୁ ଆସି ରହିଅଛ, ତେବେ ତାହା ତୁମ୍ଭଙ୍କୁ ତ କହିବି ନାହିଁ ଆଉ କହିବି ବା କାହାକୁ ? ପରକାଳ ପ୍ରତି ଦୃଷ୍ଟି ଦେଇ ତୁମ୍ଭର ହିତସାଧନ କରିବା ମୋର ଧର୍ମ । ଅତଏବ କହୁଅଛି, ଶୁଣ । ତୁମ୍ଭ

ପ୍ରତି ରାଜାଙ୍କ ମନର ଭାବ ଅତ୍ୟନ୍ତ ବକ୍ରତ । ସେ ଗୋପନରେ ମୋତେ କହିଅଛନ୍ତି ଯେ, ସେ ଭୂମୂର ପ୍ରାଣ ସଂହାର କରି ନିଜ ପରିବାରବର୍ଗଙ୍କୁ ପରିତୃପ୍ତ କରିବେ ।"

ତାହା ଶୁଣି ସଞ୍ଜୀବକ ଅତ୍ୟନ୍ତ ବିଷଣ୍ଣ ହେଲା । ଦମନକ ପୁନରାୟ କହିଲା, "ବିଷାଦରେ କୌଣସି ଫଳ ନାହିଁ । ବର୍ତ୍ତମାନ ଯାହା କର୍ତ୍ତବ୍ୟ, ତହିଁର ହିଁ ଅନୁଷ୍ଠାନ କର ।" ସଞ୍ଜୀବକ କ୍ଷଣକାଳ ଚିନ୍ତାକରି କହିଲା, "ଦୁର୍ଜ୍ଜନମାନେ ପ୍ରାୟ ସ୍ତ୍ରୀରତ୍ନ ଲାଭ କରିଥାନ୍ତି, କୃପଣଗଣ ଧନ ପ୍ରାପ୍ତ ହୋଇଥାନ୍ତି, ଶସ୍ୟକ୍ଷେତ୍ରରେ ବାରିବର୍ଷଣ ନ ହୋଇ ସମୟ ସମୟରେ ପାହାଡ଼ ପର୍ବତ ଓ ସମୁଦ୍ରରେ ବୃଷ୍ଟି ହୋଇଥାଏ ଏବଂ

'ଲକ୍ଷ୍ମୀ ଦେବୀ ଯା'ନ୍ତି ପ୍ରାୟ ନୀଚର ଭବନେ,
ଭାରତୀ ଭଜନ୍ତି ପ୍ରାୟ ହୀନବଂଶ ଜନେ ।'

ପଣ୍ଡିତଗଣ ଏହା ଯଥାର୍ଥ କହିଅଛନ୍ତି ।

ଅନନ୍ତର ସଞ୍ଜୀବକ ଭାବିଲା—ଦମନକ ହିଁ ବୋଧହୁଏ ଏହି ସମସ୍ତ ଅନର୍ଥର ମୂଳ । କିନ୍ତୁ ଏହାର ବ୍ୟବହାର ଦେଖି ତ ତାହା କିଛି ବୁଝାଯାଏ ନାହିଁ । କଜ୍ଜ୍ୱଳ ଅତ୍ୟନ୍ତ କଳା ହେଲେ ସୁଦ୍ଧା ତାହା ସୁନ୍ଦରୀ ସ୍ତ୍ରୀର ଚକ୍ଷୁରେ ଯେପରି ସୁନ୍ଦର ଦେଖାଯାଏ, ସେପରି ଦୁଷ୍ଟ ଲୋକ ମଧ୍ୟ ଆଶ୍ରୟ ଗୁଣରେ ଅତି ଶୋଭା ପାଏ ଏବଂ ତାହାକୁ ଲୋକେ ଭଦ୍ରବ୍ୟକ୍ତି ବୋଲି କହିଥାନ୍ତି ।

ସଞ୍ଜୀବକ ଏପରି ଚିନ୍ତାକରି କହିଲା, "ହାୟ ! ଏ କି ସର୍ବନାଶ ଉପସ୍ଥିତ ହେଲା ! କି ଆଶ୍ଚର୍ଯ୍ୟ ! ପ୍ରାଣ ପଣରେ ରାଜାର ସେବା କଲେ ସୁଦ୍ଧା ସେ ପରିତୁଷ୍ଟ ହୁଏ ନାହିଁ—ବରଂ ଅନିଷ୍ଟ କରିଥାଏ ।

'ରାଜା ଏକ ଅପରୂପ ପ୍ରତିମା-ସୃଜନ !' ଏହି ବିଷୟରେ କୌଣସି ଚେଷ୍ଟା କରିବା ମଧ୍ୟ ନିଷ୍ଫଳ; ଯେହେତୁ ଅକାରଣ ପର ପ୍ରତି ଦ୍ୱେଷ କରିବା ଲୋକଙ୍କୁ ଶାନ୍ତ କରିବା କଷ୍ଟକର । ଯେଉଁ ଲୋକ କାରଣ ପାଇଲେ ରୁଷ୍ଟ ହୁଏ, କାରଣ ଗଲେ ତାହାର ମନ ଶାନ୍ତପ୍ରାପ୍ତ ହୁଏ । ହାୟ ! ମୁଁ ରାଜାର କି ଅନିଷ୍ଟ କରିଅଛି ? ରାଜାମାନେ ଏପରି ଅକାରଣ ଅପକାର କରିଥାନ୍ତି ।"

ଦମନକ—ହଁ, ତୁମ୍ଭେ ଯଥାର୍ଥ କହୁଅଛ । କେତେ ଲୋକ ବିଜ୍ଞ, ଭକ୍ତ ଓ ବନ୍ଧୁଠାରୁ ଉପକାର ପାଇ ସୁଦ୍ଧା ସେମାନଙ୍କ ପ୍ରତି ଅତ୍ୟାଚାର କରନ୍ତି ଏବଂ ସାକ୍ଷାତରେ ଅନିଷ୍ଟ ସାଧନ କରିବା ଲୋକଙ୍କ ପ୍ରତି କେତେ ଜଣ ବା ସନ୍ତୁଷ୍ଟ ହୋଇଥାନ୍ତି । ଅପରୂପ ପ୍ରଭୁମାନଙ୍କ ଗତି ଅତି ବିଚିତ୍ର ! ସେମାନଙ୍କ ମତି ସ୍ଥିର ରହେ ନାହିଁ । ସେମାନଙ୍କ ମନ କେତେବେଳେ କି ଭାବ ଧାରଣ କରେ, ତାହା ସ୍ଥିର କରି ହୁଏ ନାହିଁ । ଅତଏବ ପର-ସେବା ଅତି ବିଷମ ବ୍ୟାପାର । ଯୋଗୀମାନେ ସୁଦ୍ଧା ତାହାର ତତ୍ତ୍ୱ ଖୋଜ ପାଇ ପାରନ୍ତି ନାହିଁ । ପୁଣି ଅସତ୍ ଲୋକର ଉପକାର କଲେ, ଦୁର୍ମତି ବ୍ୟକ୍ତିକୁ ଉପଦେଶ ଦେଲେ, ଅବାଧ୍ୟ ଲୋକକୁ ଆଦେଶ ଦେଲେ ଏବଂ ମୂଢ଼ ବ୍ୟକ୍ତିକୁ ଜ୍ଞାନ ଦାନ କଲେ, କିଛି ଫଳ ହୁଏ ନାହିଁ । ସୁତରାଂ ଅପାତ୍ରରେ ଚେଷ୍ଟା ବୃଥା ମାତ୍ର । ଆହୁରି ଦେଖ, ଏହି ଜଗତରେ ଭୋଗ୍ୟ-ବସ୍ତୁ ବିଘ୍ନ-ରହିତ ନୁହେଁ, ଯେହେତୁ ସୁଗନ୍ଧ ଚନ୍ଦନବୃକ୍ଷରେ ବିଷଧର ଥାଏ, କମଳଶୋଭିତ ଜଳରେ ଦୁଷ୍ଟ ଜଳଚର ବାସ କରେ ଏବଂ ଗୁଣୀ ଲୋକମାନେ ସୁଦ୍ଧା ଖଳଠାରୁ ଭୟ ପାଇଥାନ୍ତି । ଚନ୍ଦନବୃକ୍ଷର ମୂଳରେ ସର୍ପ, ପୁଷ୍ପରେ ଭ୍ରମର, ଅଗ୍ରରେ ଭଲ୍ଲୁକ ଏବଂ ଶାଖାରେ ବାନର; ଅତଏବ ଚନ୍ଦନବୃକ୍ଷର ଏପରି କୌଣସି ଅଙ୍ଗ ନାହିଁ, ଯାହା ଦୁଷ୍ଟ ଦ୍ୱାରା ଅଧିକୃତ ନୁହେଁ ।

ବର୍ତ୍ତମାନ ବୁଝିଲି, ଏହି ରଜାର ମୁଖରେ ମଧୁ କିନ୍ତୁ ହୃଦୟରେ ବିଷ । ଖଳର ବାକ୍ୟ ଓ କାର୍ଯ୍ୟ ଅପୂର୍ବ କପଟତାପୂର୍ଣ୍ଣ । ସେ କାହାକୁ ହେଲେ ଦୂରରୁ ଦେଖିବା ମାତ୍ରେ କର ଯୋଡ଼ି ଆସନରୁ ଉଠେ ଏବଂ ନିକଟକୁ ଆସି ପ୍ରେମାଳିଙ୍ଗନ କରେ । ନଟମାନେ ଯେପରି ରାମ, କୃଷ୍ଣ, ଚୈତନ୍ୟ ପ୍ରଭୃତି ବେଶ ଧାରଣ କରି ସେମାନଙ୍କ ଅଙ୍ଗଭଙ୍ଗୀ ଓ ହାବଭାବ ପ୍ରକାଶ କରନ୍ତି, କିନ୍ତୁ ବାସ୍ତବିକ ସେମାନେ ସେପରି ନୁହନ୍ତି, ସେପରି ଦୁଷ୍ଟ ଲୋକମାନେ ବାହାରରେ ଲୋକଙ୍କ ନିକଟରେ ନାନାବିଧ ସୌଜନ୍ୟ ପ୍ରକାଶ କରିଥାନ୍ତି; କିନ୍ତୁ ପ୍ରକୃତରେ ସେମାନେ ସେପରି ନୁହନ୍ତି । ଦେଖ- ଦୁସ୍ତର ପାରାବାର ଉତ୍ତୀର୍ଣ୍ଣ ହେବା ସକାଶେ ପୋତର ଏବଂ ଅନ୍ଧକାର ଦୂର କରିବା ଉଦ୍ଦେଶ୍ୟରେ ପ୍ରଦୀପର ସୃଷ୍ଟି ହୋଇଅଛି ।

ଅନଳର ଅଭାବ ବ୍ୟଜନେ ହୁଏ ଦୂର,
ଅଙ୍କୁଶେ ଦନ୍ତୀର ଦର୍ପ ହୋଇଯାଏ ଚୂର ।

ବିଧାତା ଜଗତର ପ୍ରତ୍ୟେକ ବିଷୟର ଉପାୟ ସ୍ଥିର କରି ଅଛନ୍ତି କିନ୍ତୁ ଦୁର୍ଜ୍ଜନ-ଚିତ୍ତ ବଶ କରିବାର ଉପାୟ ଖୋଜି ପାଇ ପାରି ନାହାନ୍ତି ।

ସଞ୍ଜୀବକ ମନେ ମନେ ଭାବିଲା, "ଓଃ କି କଷ୍ଟ ! ମୁଁ କେବଳ ଶସ୍ୟ ଭୋଜନ କରେଁ, ସିଂହ କି ଦୋଷ ଦେଖି ମୋତେ ବଧ କରିବ ? ତାହା ସହିତ ମୋର ଯୁଦ୍ଧ ବା କିପରି ସମ୍ଭବ ? ଯେଉଁଠାରେ ବଳ, ବିତ୍ତ ଉଭୟ ସମାନ ଭାବରେ ଥାଏ, ସେହି ସ୍ଥଳରେ ପରସ୍ପର ସହିତ ଯୁଦ୍ଧ ଶୋଭାପାଏ; ନଚେତ୍ ବଳବାନ୍ ସହିତ କ୍ଷୁଦ୍ରର ଯୁଦ୍ଧ ଅସଙ୍ଗତ ଓ ଅସୁନ୍ଦର ।"

ସଞ୍ଜୀବକ ପୁନର୍ବାର ଚିନ୍ତା କରି କହିଲା, "ବୁଝି ପାରୁ ନାହିଁ, କିଏ ମୋ ପ୍ରତି ରାଜାଙ୍କର ଏପରି ମନୋବିକାର ଘଟାଇଅଛି । ରାଜାଙ୍କ ମନ ଯଦି ଥରେ ଭାଙ୍ଗିଯାଏ ତାହାହେଲେ ତାହାଙ୍କୁ ସର୍ବଦା ଶଙ୍କା କରିବା କର୍ତ୍ତବ୍ୟ । କାରଣ, ସ୍ଫଟିକବଳୟ ଯେପରି ଭଗ୍ନ ହେଲେ ପୁନର୍ବାର ଯୋଡ଼ି ହୁଏ ନାହିଁ, ସେପରି ମନ୍ତ୍ରୀ ପ୍ରତି ରାଜାର ମନ ଥରେ ବିକୃତ ହେଲେ ପୁନର୍ମିଳନ ଅସମ୍ଭବ ଏବଂ ରାଜାର କ୍ରୋଧ ଓ ବଜ୍ରପତନ— ଏହି ଉଭୟ ଅତିଶୟ ଭୟାନକ । ବଜ୍ରପତନରେ କେବଳ ଜଣେ ମାତ୍ର ମୃତ୍ୟୁମୁଖରେ ପତିତ ହୁଏ, କିନ୍ତୁ ରାଜାର କ୍ରୋଧରେ 'ସର୍ବଂଶେ ନିଧନ' ହୁଏ । ଅତଏବ ବର୍ତ୍ତମାନ ଯୁଦ୍ଧଦ୍ୱାରା ହିଁ ପ୍ରାଣତ୍ୟାଗ କରିବି, ଆଉ ତାହାର ଆରାଧନା କରିବା ଉଚିତ ନୁହେଁ । "ମରଣେ ଦେବଲୁ ପଦ, ଜୟେ ଲକ୍ଷ୍ମୀ-ପତିଃ ଦୁଇଟି ବୀରର ପକ୍ଷେ ପରମ ମଙ୍ଗଳ ।" ଏହା ହିଁ ପ୍ରକୃତ ଯୁଦ୍ଧର ସମୟ । କାରଣ, ଯେଉଁଠାରେ ଯୁଦ୍ଧ ନ କଲେ ମରଣ ସୁନିଶ୍ଚିତ ଏବଂ ଯୁଦ୍ଧ କଲେ ଜୀବନ-ସଂଶୟ ଅନିବାର୍ଯ୍ୟ, ସେପରି ସ୍ଥଳରେ ଯୁଦ୍ଧ ସକାଶେ ଅଗ୍ରସର ହେବା ଏକାନ୍ତ ବାଞ୍ଛନୀୟ । ଯେଉଁ ସ୍ଥାନରେ ଯୁଦ୍ଧ କଲେ ଯାହା ଏବଂ ନ କଲେ ମଧ୍ୟ ତାହା ଘଟେ ଏବଂ ଜୀବନର କୌଣସି ଆଶା ରହେ ନାହିଁ, ସେପରି ସ୍ଥଳରେ ଶତ୍ରୁ ସହିତ ଯୁଦ୍ଧ କରି ଶରୀର ତ୍ୟାଗ କରିବା ହିଁ ଶ୍ରେୟସ୍କର । ଯୁଦ୍ଧରେ ବିଜୟୀ ହେଲେ ଲକ୍ଷ୍ମୀଲାଭ ଏବଂ ମୃତ୍ୟୁ ଘଟିଲେ ସ୍ୱର୍ଗଲାଭ ହୁଏ । ଏହି ଶରୀର କ୍ଷଣସ୍ଥାୟୀ, ଅତଏବ ଯୁଦ୍ଧ ବା ମୃତ୍ୟୁକୁ ଭୟ କରିବା କାପୁରୁଷତାର ଲକ୍ଷଣ ।

ସଞ୍ଜୀବକ ଏହା ସ୍ଥିର କରି ଦମନକକୁ କହିଲା, "ମିତ୍ର ରାଜା ମୋର ବଧାର୍ଥୀ ବୋଲି ମୁଁ କିପରି ଜାଣି ପାରିବି ?

ଦମନକ—ଯେତେବେଳେ ସେ ଦୁଇ କର୍ଣ୍ଣ ଠିଆ କରି, ଲାଙ୍ଗୁଳ ଊର୍ଦ୍ଧ୍ୱକୁ ଟେକି, ଚରଣ ଉନ୍ନତ କରି, ମୁଖବ୍ୟାଦାନପୂର୍ବକ ତୁମ୍ଭ ପ୍ରତି ଦୃଷ୍ଟିପାତ କରିବ, ସେତେବେଳେ ତୁମ୍ଭେ ନିଜ ପରାକ୍ରମ ପ୍ରକାଶ କରିବାକୁ ଭୁଲିବ ନାହିଁ। କାରଣ ଅଗ୍ନି ଭସ୍ମରେ ପରିଣତ ହେଲେ ଯେପରି ସମସ୍ତେ ତାହାକୁ ପଦଦଳିତ କରିଥାନ୍ତି, ବଳବାନ୍ ବ୍ୟକ୍ତି ତେଜୋହୀନ ହେଲେ ସେପରି ସମସ୍ତେ ତାହାକୁ ଅପମାନିତ କରନ୍ତି। ତୁମ୍ଭେ ଏହି ସକଳ କଥା ଅତି ଗୋପନରେ ରଖ; ପ୍ରକାଶିତ ହେଲେ ତୁମ୍ଭର ରକ୍ଷା ନାହିଁ, ମୋର ମଧ୍ୟ ରକ୍ଷା ନାହିଁ।

ତହିଁ ଉତ୍ତରେ ଦମନକ କରଟକ ନିକଟକୁ ଗମନ କଲା।

କରଟକ ଜିଜ୍ଞାସା କଲା, "ବନ୍ଧୁବର, କାର୍ଯ୍ୟ ସମ୍ପନ୍ନ ହୋଇଅଛି ତ ?"

ଦମନକ—ହଁ, ସେମାନଙ୍କର ସୁହୃଦ୍‌ଭେଦ ଘଟାଇଅଛି।

କରଟକ—ଏଥିରେ ଆଉ ସନ୍ଦେହ କଣ ? କାରଣ, ଏହି ଜଗତରେ ଖଳର ପ୍ରକୃତ ବନ୍ଧୁ କିଏ ? ହିଂସା କରାଇଲେ କିଏ ବା ରାଗ ନ କରେ ? ଧନରେ କାହାର ବା ଗର୍ବ ଉଦ୍ଧତ ନ ହୁଏ ? ମନ୍ଦ-କର୍ମରେ ପରିପକ୍ୱ କିଏ ହୁଏ ନାହିଁ ? ଧୂର୍ତ୍ତ ସ୍ୱାର୍ଥଲୋଭରେ ସେ ଭାଗ୍ୟବାନ୍ ବ୍ୟକ୍ତିକୁ କୁକର୍ମ ଶିକ୍ଷା ଦିଏ। ଜ୍ୱଳନ୍ତ ଅଗ୍ନି ତୁଲ୍ୟ ଖଳ-ସଂସର୍ଗ ସମସ୍ତ ଛାରଖାର କରେ।

ଅନନ୍ତର ଦମନକ ସିଂହ ନିକଟକୁ ଯାଇ କହିଲା, "ଦେବ ! ସେହି ପାପିଷ୍ଠ ଆସୁଅଛି। ଅତଏବ ସଜ୍ଜୀଭୂତ ହୁଅନ୍ତୁ।" ପିଙ୍ଗଳକ ତତ୍‌କ୍ଷଣାତ୍ ସଜ୍ଜୀଭୂତ ହେଲା। ସଞ୍ଜୀବକ ଯାଇ ସିଂହକୁ ସେପରି ବିକଟାକାର ଦେଖି ଯଥାସାଧ୍ୟ ବିକ୍ରମ ପ୍ରକାଶ କଲା। ଉଭୟଙ୍କ

ମଧ୍ୟରେ ତୁମୁଳ ସଂଗ୍ରାମ ସଂଘଟିତ ହେଲା । ସଞ୍ଜୀବକ ପିଙ୍ଗଳକ ହସ୍ତରେ ନିହତ ହେଲା ।

ପିଙ୍ଗଳକ, ସେବକ ସଞ୍ଜୀବକକୁ ସଂହାରପୂର୍ବକ ଶ୍ରାନ୍ତି ଦୂର କରି, ବିଷଣ୍ଣ ଭାବରେ ବସିଲା ଏବଂ ଭାବିଲା, "ହାୟ, ମୁଁ କି ନିଦାରୁଣ କାର୍ଯ୍ୟ କଲି ! ସିଂହ ହସ୍ତୀବଧ କରି ତାହାକୁ ଭକ୍ଷଣ କରେ ନାହିଁ ଏବଂ ଅକାରଣ ହତ୍ୟା-ପାପରେ ଲିପ୍ତ ହୁଏ; ସେପରି ଅନ୍ୟ ଲୋକେ ରାଜାର ରାଜ୍ୟ-ସୁଖ ଭୋଗ କରନ୍ତି; କିନ୍ତୁ ରାଜା ମିତ୍ର ପ୍ରତି ପାପାଚରଣ କରି ନିଜ ବିନାଶପଥ ପରିଷ୍କାର କରେ । ଫଳବତୀ ଭୂମିଖଣ୍ଡ ନଷ୍ଟ ହେଲେ ମନରେ ବେଦନା ହୋଇଥାଏ; କିନ୍ତୁ ସୁବୁଦ୍ଧି ଭୃତ୍ୟର ବିନାଶରେ ତତୋଽଧିକ ଦୁଃଖ ଜାତ ହୁଏ । ଭୂ-ସମ୍ପତ୍ତି ବିନଷ୍ଟ ହେଲେ ପୁନର୍ବାର ମିଳିବା ଅସମ୍ଭବ ନୁହେଁ; କିନ୍ତୁ ସୁଯୋଗ୍ୟ ସେବକ ନଷ୍ଟ ହେଲେ ପୁନଃ-ପ୍ରାପ୍ତି ଆଶା ବିଡ଼ମ୍ବନା ମାତ୍ର ।

ଦମନକ—ପ୍ରଭୋ ! ଏ କି ଆଶ୍ଚର୍ଯ୍ୟର ବିଷୟ ! ଶତ୍ରୁର ବିନାଶରେ ଆପଣ ଶୋକ ପ୍ରକାଶ କରୁଅଛନ୍ତି ! ଶାସ୍ତ୍ରକାରଗଣ କହିଅଛନ୍ତି, ଯେଉଁ ବ୍ୟକ୍ତି ରାଜାର ଜୀବନ ନଷ୍ଟ କରିବାକୁ ଚେଷ୍ଟିତ ହୁଏ, ସେ ପିତା ହେଉ ବା ପୁତ୍ର ହେଉ, ଭ୍ରାତା ହେଉ କିମ୍ବା ବନ୍ଧୁ ହେଉ, ତାହାର ପ୍ରାଣ ସଂହାର କରିବା ଆତ୍ମ-ମଙ୍ଗଳାକାଙ୍କ୍ଷୀ ରାଜାର ଅବଶ୍ୟ କର୍ତ୍ତବ୍ୟ ଏବଂ ଯେ ଧର୍ମ-ଅର୍ଥ-କାମ-ତତ୍ତ୍ୱରେ ଗଭୀର ଜ୍ଞାନ ଲାଭ କରିଅଛି, ସେ କଦାପି ଅତିରିକ୍ତ କ୍ଷମାଶୀଳ ହୁଏ ନାହିଁ । ଅତିରିକ୍ତ କ୍ଷମା-ଗୁଣ ଦେଖାଇବା ଲୋକ ହାତର ଲକ୍ଷ୍ମୀ ନିଜ ପାଦରେ ଠେଲେ ସିନା ! ଶତ୍ରୁ କିମ୍ବା ମିତ୍ର ପ୍ରତି କ୍ଷମା-ପ୍ରଦର୍ଶନ ତପସ୍ୱୀ ପକ୍ଷରେ ଶୋଭନୀୟ; କିନ୍ତୁ ବିଦ୍ରୋହୀ ଶତ୍ରୁ ପ୍ରତି କ୍ଷମା-ପ୍ରଦର୍ଶନ ରାଜା ପକ୍ଷରେ ନିତାନ୍ତ ଦୋଷାବହ । ଆହୁରି ଦେଖନ୍ତୁ, ଯେଉଁ

ଲୋକ ଲୋଭ-ପରବଶ କମ୍ବା ମଦମତ୍ତ ହୋଇ ପ୍ରଭୁର ସାମ୍ରାଜ୍ୟ ଅପହରଣ କରିବାକୁ ଉଦ୍ୟତ ହୁଏ, ସେ ପାପୀ ପକ୍ଷରେ ମୃତ୍ୟୁ ହିଁ ଏକମାତ୍ର ପ୍ରାୟଶ୍ଚିତ୍ତ ।

କଥିତ ଅଛି ଖାଦ୍ୟାଖାଦ୍ୟର ବିଚାର ନ କରିବା ବ୍ରାହ୍ମଣ ଅତି ଦମ୍ଭୀ ରାଜା, ପ୍ରତିକୂଳ ଭୃତ୍ୟ, ଅକୃତଜ୍ଞ ବ୍ୟକ୍ତି, କର୍ତ୍ତବ୍ୟ-ଜ୍ଞାନହୀନ କର୍ମଚାରୀ, ଚପଳା ଗୃହିଣୀ ଏବଂ ଦୁର୍ଜନ ଏମାନଙ୍କ ସହବାସ ଯେତେ ଶୀଘ୍ର ବର୍ଜିତ ହୁଏ, ସେତେ ମଙ୍ଗଳ । ବିଶେଷତଃ ରାଜନୀତି ବେଶ୍ୟା ତୁଲ୍ୟ ବହୁରୂପୀ । କାରଣ, ବେଶ୍ୟା କେବେ ସତ୍ୟ କଥା କହେ, କେବେ ବା ମିଥ୍ୟା କହେ; କେବେ ସୁମିଷ୍ଟ ବଚନ ପ୍ରକାଶ କରେ, କେବେ ଅବା ଅତି ନିଷ୍ଠୁର କଥା କହେ; କେବେ ହିଂସା କରେ, କେବେ ବା ଦୟାବନ୍ତୀ ହୁଏ, କେବେ ଅର୍ଥ ହରଣ, କେବେ ବା ଦାନ କରେ ଏବଂ ପ୍ରତ୍ୟହ ବ୍ୟୟ ଓ ବହୁ ଉପାର୍ଜନ କରିଥାଏ ।

ଦମନକ ଏପରି ନାନା କପଟ କଥାରେ ପିଙ୍ଗଳକକୁ ସନ୍ତୁଷ୍ଟ କଲା । ପିଙ୍ଗଳକ ପ୍ରକୃତିସ୍ଥ ହୋଇ ସିଂହାସନରେ ଉପବେଶନ କଲା । ଦମନକ ଅତ୍ୟନ୍ତ ହର୍ଷୋତ୍ଫୁଲ୍ଲ ଚିତ୍ତରେ ପଶୁରାଜକୁ କହିଲା, 'ମହାରାଜ ! ଚିର ବିଜୟୀ ହୁଅନ୍ତୁ, ଆପଣଙ୍କ ଶତ୍ରୁକୁଳ ବିନଷ୍ଟ ହେଉନ୍ତୁ ଏବଂ ସମସ୍ତ ଜଗତର ମଙ୍ଗଳ ହେଉ ।' ସିଂହର ଏପରି ଶୁଭ କାମନା କରି ଦମନକ ସେଠାରେ ପରମ ସୁଖରେ ବାସ କରିବାକୁ ଲାଗିଲା ।

କଥା ଶେଷ କରି ବିଷ୍ଣୁଶର୍ମା ରାଜକୁମାରମାନଙ୍କୁ କହିଲେ, 'ତୁମ୍ଭେମାନେ 'ସୁହୃଦଭେଦ' ପ୍ରକରଣ ଶୁଣିଲ ତ ?' ରାଜପୁତ୍ରମାନେ କହିଲେ, 'ଗୁରୋ ! ଆପଣଙ୍କ ପ୍ରସାଦରେ ତାହା ଶୁଣି ସୁଖୀ ହେଲୁଁ ।

ଯେଉଁ ସକଳ ସଦୁପଦେଶ ଦ୍ୱାରା ଆମ୍ଭମାନଙ୍କ ହୃଦୟ ଜ୍ଞାନାଲୋକିତ କରିଅଛନ୍ତି, ସେଥି ସକାଶେ ଆମ୍ଭେମାନେ ଆପଣଙ୍କ ନିକଟରେ ଚିରକୃତଜ୍ଞ ରହିଲୁଁ ।' ବିଷ୍ଣୁଶର୍ମା କହିଲେ, "ମୁଁ ଆଶୀର୍ବାଦ କରୁଅଛି—"

ତୁମ୍ଭମାନଙ୍କ ଶତ୍ରୁସକଳ ସୁହୃଦ୍ଭେଦରେ ଛିନ୍ନଭିନ୍ନ ହୋଇଯାନ୍ତୁ, ଖଳମତି ଦୁର୍ଜ୍ଜନ ପାମରଗଣ ଯମାଳୟରେ ସ୍ଥାନ ପାଆନ୍ତୁ ଏବଂ ସକଳ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ସୌଭାଗ୍ୟ ପ୍ରଜାଗଣଙ୍କ ମଧ୍ୟରେ ପ୍ରତି ମୁହୂର୍ତ୍ତ ବାସକରୁ ।'

---

'କି କି ପାପେ ହୁଏ ଛିନ୍ନ ପ୍ରେମର ବନ୍ଧନ;
ହିଏ ତାର ପରିଚୟ ଏହି ପ୍ରକରଣ ।'

## ସୁହୃଦ୍ଭେଦ

ନାମକ ଦ୍ୱିତୀୟ କଥା

## ସମାପ୍ତ

---

ମୁଦ୍ରଣ—ନିଜ ପ୍ରେସ, କାଜିବଜାର, କଟକ-୧, ୧୯୭୮